# ଚୟନ

ପଣ୍ଡିତ ଗୋଦାବରୀଶ ମିଶ୍ର




ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲି:

ବ୍ରହ୍ମପୁର : କଟକ : ସମ୍ବଲପୁର

# ଚୟନ

( ଅଷ୍ଟମ ଶ୍ରେଣୀ ନିମିତ୍ତ )

ଲେଖକ—
ପଣ୍ଡିତ ଗୋଦାବରୀଶ ମିଶ୍ର ଏମ୍. ଏ., ବି. ଟି.

ପଞ୍ଚମ ମୁଦ୍ରଣ

ପ୍ରକାଶକ—
ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ କୋ:
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବ୍ରହ୍ମପୁର : କଟକ : ସମ୍ବଲପୁର
୧୯୫୪

ମୂଲ୍ୟ (କିଟଙ୍କା ) (ଅତିରିକ୍ତ ନାହିଁ)

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|

# ଚୟନ



## ସୂର୍ଯ୍ୟମୁଖୀ

କେତେ ତରୁଲତା ଉପବନେ ଏଥି
ଶ୍ୟାମଳ ସୁବେଶେ ବିକଶନ୍ତି ନିତି ।
ଡାଳୁ ଡାଳେ ଝରି ପଡ଼ଇ ମାଧୁରୀ,
ଉଚ୍ଛୁଳଇ ପରା କିଶଳୟ ପୂରି ।

ସୁଧାସ୍ରୋତେ ଧୀରେ ବହଇ ସମୀର,
କୁଞ୍ଜ କୁଞ୍ଜେ ବାଟ ଖେଳାଇ ରୁଚିର !
ଡାଳେ ଡାଳେ ପରା ଶ୍ୟାମଳ ଗହଳେ
ଲୁଚି, ପରଭୃତ ଗାବଇ ମଧୁରେ ।

ଏ ସକଳ ମେଲେ ଛବିଳ ମଣ୍ଡନେ
ରହନ୍ତୁ, ରେ ଫୁଲ୍, କି ଗୂଢ଼ ଧିଆନେ !
ରାତକ ଜାଗରେ ବସି ତୁ ଅନାଇଁ
ଉଷା-ଅଙ୍କେ ରବି ଉଇଁବାର ପାଇଁ ।

ପାହାନ୍ତ୍ର ତପନ ପାଟଳିମା ଶୋଭା
ସ୍ୱର୍ଣ୍ଣ ଶିଖି ମେଳେ ଭେଡ଼େ ମନଲୋଭା !
ତହିଁ ତୁ ପୁଲକେ ପରାଣ ନିବେଶି,
ସେ ଶୋଭା ସମ୍ଭାରେ ନିତ ଯାଉ ମିଶି ।

ଉଇଁ ଉଠେ ରବି ଯାଏ ଅପସରି,
ତା ତୁଲେ ଚଳଇ ତୋ ବଦନ-ଶିରୀ ।

ସେ ରବି ଅବର ପ୍ରତୀଚୀ ଭୂଧରେ
ପାଟଳ ହିନ୍ଦୋଳେ ବୁଡ଼ିଯିବା ବେଳେ,
କି ଭଳି ତୁଷିତେ ଦେଖି ତୋ ମେଲାଣି,
ରାତି ଉଜାଗରେ ବସିରହୁ ପୁଣି ।

ଦିନୁ ଦିନ ରବି-ରୂପ ଅନୁସରି
ପୂରବୁ ପ୍ରତୀରେ ଯାଉ ଚଳି ଚଳି ।
ଏ ଯେ ଏ ମରତେ ସରଗ ସମ୍ଭାର,
ପରାଣ ପୁଲକେ ଖେଳେ, ଅବିରଳ,

ଦିନେ କି ମନୁ ମୁଁ ପାରିବ ବିସୋରି ?
ରହିବି କେମନ୍ତେ ମୁରୁଛି ଏ ଶିରୀ ?
ଗୋଲାପ, ମନ୍ଦାର, ବଉଳ, ମାଳତୀ,
ଯୁଇ, ଜାଇ, ମଲ୍ଲୀ, ନିଆଳୀ, ସେବତୀ—

କେତେ କେତେ ଫୁଲ ମଧୁ ସଉରଭେ
ଉପବନେ ଏଥି ନାଚନ୍ତି ଗରବେ ।
ଗୋଟିରୁ ଗୋଟିଏ ବଳି ବିମୋହନ,
ସାରା ବନଦେଶେ ଛବି ଅତୁଳନ ।
ଗୋଟି ଗୋଟି ହୋଇ ଖେଳି କଣଳୟେ,
ଭସାଇ ଦିଅନ୍ତି ସୁରଭି ମଳୟେ ।
ଏ ସବୁରୁ ବଳି ମଧୁର ଅଧର,
ତୋ ବଦନ ଧୀର ବିନମ୍ର ମାଧୁରୀ;
ଏ ଯେ ତୋର ରୂପ ସରଗ ପୀୟୂଷ,
କନକ-ବଦନେ ମୃଦୁ ମଧୁହାସ;
କି ଅଛି ଜଗତେ ହେବ ତାକୁ ସରି,
ଫୁଟାଇ ତା ପାଶେ ଦେଖାଇବ ଶିରୀ ?
ତହୁଁ ବଳି ପୁଣି ଏ ଶୁଭ୍ର ଧିଆନ
ସୁଖେ ଦୁଃଖେ ସମ ମନ ସନମାନ ।
ଚାଳିଥାଅ, ଫୁଲ, ଚାଳିଥା ରେ ରହ,
ତୋ ମନ ନୟନ ଦୂରୁ ଦୂରେ ଚାହିଁ ।
ଯେତେ ଦିନ ଫୁଟି ଶୋହିବୁ କାନନେ,
ବସି ରୁହିଁଥାଅ ପୁଲକ ମଉନେ ।
ସେ ଧିଆନେ ଯେବେ ଲଭିବୁ ବିଲୟ,
ବଢ଼ାଇବୁ ସୃଷ୍ଟି ସମ୍ପଦ ନିଶ୍ଚୟ ।

## ପଞ୍ଜୁରିଟି *

ଖେଳ ଖେଳ ହୋଇ, କାଠଯୋଡ଼ି ପାଣି,
କୁଳ ବନ୍ଧ ମେଞ୍ଚି ସକଳ ଡେଇଁ,
ତୀର ଉଚ୍ଚ ଗିରି ଉପାଡ଼ି ନିମିଷେ,
ବେଗୁ ବେଗଭରେ ଯାଅ ରେ ବହି ।
ଗଛ ଲତା କେତେ ଦୂର ବନଦେଶୁଁ
ତୋ ବୁକେ, ତଟିନି, ଆସଇ ଭାସି;
ଘୂରୁଁ ଘୂରୁଁ ପୁଣି କେଉଁ ଦେଶେ ଯାଇ
କେତେ ଦୂରେ ଯିବ ପାଣିରେ ମିଶି ।
ସେହିଭଳି ଯାଉ ଏ ମୋ ପଞ୍ଜୁରିଟି
ଖରସ୍ରୋତେ ଭାସି ତୋ ଜଳଧାରେ,
ଦୂର ଦେଶେ ତହିଁ ଅଦୃଶ୍ୟ ହୋଇ ରେ
ବୁଡ଼ିଯାଉ ନଇ ଅତଳ ତଳେ ।

---

* କବି କଟକରେ ପଢ଼ିବା ସମୟରେ ତାଙ୍କ ବସାଘରେ ଗୋଟିଏ ଶୁଆ ପୋଷା ହୋଇଥିଲା । ଶୁଆଟି ମରିଯିବାରୁ ପଞ୍ଜୁରିଟିକି କାଠଯୋଡ଼ି ପାଣିରେ ପକାଇ ଦିଆଗଲା ।

ଯାହା ପାଇଁ ଏତେ          ଯତନେ ସମ୍ଭାଳି
   ପଞ୍ଜୁରୀଟି ଥିଲି ଆଦରେ ରଖି,
ସୁଖଦୁଃଖେ ମୋର          ସମ୍ପଦବିପଦେ
   ପ୍ରାଣମିତ ଯେ ତ, କୁହର ପକ୍ଷୀ ।
ସ୍ନେହ ପୁଣି ମୋର          କୁଟୀରଟିକର
   ମୁଖ ଶ୍ରୀ ଯାହା ବଢ଼ାଇ ଦେଇ,
ଏ ମର୍ତ୍ତ୍ୟମଣ୍ଡଳୁଁ          ମେଲାଣି ନେଇ ରେ
   କେଉଁ ଦେଶେ ଏବେ ରହିଲୁ ଯାଇ ?

ଗଗନ-ବିତାନେ          କି ସବେଗେ ଅହା
   ବିହଗନିକର ଉଡ଼ନ୍ତି ଏବେ;
ଗୋଟିଏ କି ଯାଇ          ସେ ଦୂର ରାଇଜୁ
   ତା ବାରତା ଆଣି ପାରିବ କବେ ?

ତରୁରୁ ତରୁକୁ          ଉଡ଼ିଗଲା ବେଳେ
   ଛାୟା ଗୋଟି ଗୋଟି ଯାଉଛି ଭାସି;
ଏହିଭଳି ଅହା          ନିମିଷକ ଦେଖା
   ତା ଛାୟା ମୋ ପାଶେ ଦିଅନ୍ତା ଆସି !

ବାଡ଼ଘାଟୁ ଫେରି          ଆସିବାରେ ମୋର
   ପଲକ ମାତର ଉଛୁର ଯେବେ,
ପଞ୍ଜୁରିଭିତରୁ          ଗୁହାଁରି ରହିଥାଏ
   ଡାକେ ପକ୍ଷୀ ସୁଧା ସେନେହ ରବେ ।

ଏବେ ଯେବେ ଘରେ ଏତେବେଳ ଅନ୍ତେ
ମିଳିବ ସେଭଳି ଅବର ଯାଇ,
କିଏ ଆଉ ଅଜ ଡାକିବ ରେ ମୋତେ,
ବସିଥିବ ଅବା ବାଟ ମୋ ଗୃହିଁ ?
ପରାଣେ ପରାଣି ଚାଲି ତା ସମ୍ପଦେ
ପଞ୍ଜୁରିରେ ତାକୁ ରଖିଲ ଆଣି;
ଡାଳେ ଡାଳେ ଅହା ଉଡ଼ୁଥିଲେ ବନେ,
କ୍ରୂର ହାତେ କାଳ ନ ଥାନ୍ତା ଟାଣି ।
ପ୍ରୀତିଡୋରେ ସିନା ହୃଦେ ହୃଦ ବାନ୍ଧି
ବେନି ଜନେ ଥିଲୁ ଉପଚେ ରହି;
ସେ ପ୍ରାଣ ପକ୍ଷୀଟି ତେଜି ଗଲା ଯେବେ,
କି ସୁଖ ମୋର ବା ଏ ଭବେ ବହି ?
ବହି ନାଅ ଖରେ, କାତଯୋଡ଼ି ପାଣି,
ବାଳି ଗିଲା ଯକ୍ଷେ ଦଅ ରେ ପୋଡି;
ପରାଣର ଏ ଯେ ପଞ୍ଜୁରିଟି ମୋର
ଫିଙ୍ଗିଦେଲି ତୋର ଗରଭେ ଏଥି ।

# ଅନାଥ ଶିଶୁ *

ଆଜ କହିଁ ରହି, ଶିଶୁ, ବିକଳେ ଏଭଳି ?
ବୃଥା ତୋର ଏତେ ଡାକ, ଏତେ ଘୋର ଅଳି ।
ଯାହାଙ୍କ ପାଦପରଶେ କି କରିବେ ଶୁଣି ?
ବୃଥା ଏତେ ଆକୁଳତା, ନ ହୁଅ ବାହୁନି ।
ଏହି ଯେ ଆସିଲା ମୂହିଁ ନବ ପୂଷ୍ଟ ବର୍ଷି,
ବନ୍ଧୁଗଣ ସମେଲେ ଯିବା ନାତ ଖେଳ ହସି;
ଶୁଣୁ ଶୁଣୁ କାନ୍ଦ ତୋର ନ ଶୁଭିବ ଆଉ,
ରୂପଟି ତୋ ଲୁଚି ପୁଣି ଯିବ ଗୃହୁଁ ଗୃହୁଁ ।
କିପାଇଁ ରଡ଼ୁ, ରେ ଶିଶୁ, କାହାକୁ ଅନାଇ ?
କେହି କି ଶୁଣିବ ଭଳେ ତୋ ବେଦନା ପାଇଁ ?
ଏହିକ୍ଷଣି ଘୋଟିଯିବ ନିବିଡ଼ ଅନ୍ଧାର;
ନ ଦିଶିବ କୂଳ, ପନ୍ଥା, ପାଣି କି ପାହାଡ଼ ।
ସେତେବେଳେ କି କରିବୁ, ଅଭାଗା ପରାଣି,
କେଉଁଠାରେ ଆଶ୍ରା ନେବୁ ନିଜ ଜୋଡ଼ା ଜାଣି ?

---

* ଚିଲିକା ଉତ୍ତର ପାହାଡ଼ରେ ଥିବା କାଳିଜାଇ ଦେବୀଙ୍କଠାରେ ବଳି ଦେବାକୁ ଲୋକେ ଯେଉଁସବୁ ବୋଦା ନିଅନ୍ତି, ତାଙ୍କୁ ନ ହାଣି ପାହାଡ଼ରେ ଛାଡ଼ିଦେଇ ଆସନ୍ତି । କବି ଥରେ ସାଙ୍ଗସାଥୀଙ୍କ ସହିତ ସେଠାକୁ ଯାଇଥିଲେ । ଲେଉଟିବାବେଳେ ନାଆ ଚଳିବାର ଦେଖି ଛେଳିଛୁଆଟିଏ ଅଦ୍ଭୁତ ସ୍ୱରରେ ମା ମା ଡାକିଲା । ତାକୁ ନାଆରେ ଆଣିବାକୁ ନାହିଁ କଲେ । ନାଉରୀଙ୍କର ବିଶ୍ୱାସ, କାଳିଜାଇ ପାହାଡ଼ରୁ ଛେଳି ଆଣିଲେ ନାଆ ବୁଡ଼ିଯିବ ।

କୁଆ ଶୁଆ ବସା ଖୋଜି ଯିବେ ତହିଁ ଉଡ଼ି,
ମାଛ ବେଙ୍ଗ ଯିବେ ସୁଖେ ପାଣିତଳେ ବୁଡ଼ି;

ଚିଲିକା ମଜ୍ଜିବ ନୀଳ ନିଶୀଥ ଶୟନେ,
ପାଷାଣ ପାଦପେ ନିଦ୍ରା ଭଜିବେ କାନନେ ।

ତୁହି ଏକା କି କରିବୁ, ଅନାଥ ଶିଶୁଟି,
ରାତି ସାରା ରବି ରବି ଯିବ କି ତୋ ଛାତି ?

ସେନେହେ ଯେ ପାଳିଥିଲା ଦୁଃଖିନୀ ଜନନୀ,
କେତେ ପରି ତୁ ଥିବ ବିକଳେ ବାହୁନି;

ଜାଣୁଥିବ ହରାଇଛୁ ପରାଣର ଧନ,
କାହୁଁ ସେ ବୁଝିବ ତୋର ଏ ଦୁଃଖ କଷଣ ?

ପଶୁକୁଳେ ଜନମିଛୁ ସରଳ ସେନେହେ,
କି ଜାଣିବ କି ବଜ୍ରର ମାନବ-ହୃଦୟେ ?

ନରଦସ୍ୟୁ ହାତେ ପଡ଼ି ଯେଉଁ କ୍ରୂର ପ୍ରାଣୀ
[illegible] ଏ ଅପନ୍ତରା ଦ୍ୱୀପେ ଣୋଡେ ଅଣି,

ତା ମଧ୍ୟୁ କୋଠରେ ଶିଶୁ ଜନମି କି ନାହିଁ ?
ସ୍ନେହ ପ୍ରୀତି ବନ୍ଧ ହୃଦେ ନାହିଁ କି ସେ ପାଇ ?

ଜଳଧି ଦେବତା ମା ଗୋ, ଜଗତତାରିଣୀ,
ଏ ଜଳ କଲ୍ଲୋଳେ କେଳି କରୁଛ ଜନନୀ,

କୋଳେ ତୋଳି ରଖ ଏହି ଅନାଥ ଶିଶୁଟି,
ଜଳ ବେଣୁ ତାନେ ଧୁନ ଯାଉ ତାର ଛାତି ।

---

# ଭିଖାରି

ଦୁଆରୁ ଦୁଆରେ ବୁଲି, ରେ ଭିଖାରି,
ବାଧିବର୍ଣ୍ଣି ଅଙ୍ଗଶ୍ରମ;
ଏ ଭଗ୍ନ ମୂଠିକ ଧେନି ଏବେ ଘରେ
ଫେରି ତୁ ଯାଅ ବହନ ।
ନିତ ନିତ କେତେ ବୁଲୁଛୁ ଏଭଳି
ଗାଆଁରୁ ଗାଆଁକୁ ଯାଇ,
ପୁଅ ଦୁହିତାଙ୍କ ପେଟ ପୋଷିବାକୁ
ଗୃଭଳ ମୂଠିକ ପାଇଁ ।
କେତେ ଠାବେ କେତେ ଗାଳି ପରାଭବ
ସହୁଛୁ ମଉନ ଭରେ;
ଧନି-ନୟନର ରକ୍ତିମ ଗୃହାଣୀ
ବହ୍ନୁରୁ ମୀଟକ ଛଲେ ।
ଖରା ବରଷାରେ ଶୀତ କୁର ହିମେ
ପୁଲକେ ପାଉଛୁ ଗୃଲି,
ଜୀବନର ସେ ଯେ ମଧୁ ଧ୍ରୁବତାରା
ହୃଦୟ ବେଦୀରେ ଧରି ।
ଯାହା ଲାଗି ଏତେ ଦୁଃଖ ଦୁରଗତ
ପରାଣ ନାରୀଶାମାନ—
ତଳେ କି ଏଥୁ ସେ ପାରୁଥିବେ ଜାଣି,
ଜଦାବସ ଖଡାଇ ଦନ ?

କି ଗୀରଭ ହୃଦେ ଧରନ୍ତୁ ରେ ପୋଷି,
ଯାହାର ଅନୁଜ୍ଞା ପାଇଁ,
ଏ ଦୁଃଖ କଷଣ ଅଧର-ତରଙ୍ଗେ
ରଖିଛୁ ବୁଡ଼ାଇ ଦେଇ ।

ଏ ସକଳ କଥା ଲବ ମାତରକେ
ପାରନ୍ତେ ଯେବେ ସେ ଜାଣି,
ପାଶୁ କି ନମିଷେ କରନ୍ତେ ଅନ୍ତର
ଜୀବନ ଅମୂଲ୍ୟ ମଣି ?

ଦୁଆରୁ ଦୁଆରେ ମାଗି ମାଗି ଯାଉ,
ବଖାଣି ହରଷଭରେ
ଦୁଃଖୀ ପରାଣର ଯେ ଗୂଢ଼ ବାରତା
ବନ୍ଦିଛୁ ଏ ମଞ୍ଜୁଳେ ।

ଗୁଳଲ ମୁଠିକ ପାଇଁ, ତେର ଭଖାଉ,
ହେଉ ଏତେ ହୀନମାନ;
ସତ୍ୟେଗ ସ୍ମଠାଏ ଦେଲେ କେଣେ, କ୍ରୋଷେ
ଅନାଏ କେହୁ ବା ଜନ ।

ଯାହା ଦୁଆରେ ଯେ କୁଅଭ ଭଖାର
ଏ ବିଶ୍ୱ ଅନନ୍ତ ଦେଶେ,
କୁବେର ଜନକ ଅବଧ ବେଢ଼ାରେ
ସୁଦାମା ଭାଜନ ବେଶେ—

ସେ ଯେବେ ନମିଷେ ଦେନନ୍ତା ହୃଦସ୍ଥ
ତା ହୃଦ-ବେଦନାମାନ,

ଏ ଦୁଃଖ କାରଣ ଭାଳେଣି ସକଳ
କାହିଁକି ଜାଣନ୍ତା ପ୍ରାଣ ?

ଦୁଃଖୀ ପାଇଁ ଦିନେ କାହାର ଜଗତେ
ନ କାନ୍ଦେ ଅନ୍ତର ତଳେ;
ଯାହାର ଯେତକ ଧନ ମାନ ଶିରୀ
ପୂଜା ତାର ମହୀତଳେ ।

ସୁଗନ୍ଧ ସୁମନ ତରୁଡାଳେ ଖୋଜ
ଅଳିସେ ମଧୁ ସଉରଭ;
ତଳେ ଝଡପଡ଼ି— ଥିବାର କଳିଟି
ଭାଗୀ କି ତହିଁରେ ହେବ ?

ବରଷା-ଧଉତ ଜଳଦ-କପୋଳେ
ଶୋହେ ସିନା ସୌଦାମିନୀ;
ଗ୍ରୀଷମ ସରସୀ ପଙ୍କିଳ ଲଲାଟେ
ଏ ଶିରୀ ଥାଇ କି ପୁଣି ?

ପସଣ ପୀରତ ଅନ୍ତର ସେନେହେ
ଲୋକା ଯେ ହୁଅଇ ଭବେ,
ସେତୁ ସିନା ଯାଇ ଶୂନ୍ୟ ହୃଦେ ନିତ
ମାଗଇ କରୁଣ ରବେ ।

ତା ମାଗୁଣି ଯେବେ ନୋହଲ କବାର
ସୁବର୍ଣ୍ଣ ମେରୁ ଶଇଳେ,
କି ଲଭ ଜଗତ ଅତୁଳ ସମ୍ପଦେ
ସରଗ ମରତ ପୁରେ ।

ତୋ ମ୍ଳାନ ବସନ ଦୁଃଖିଜନ ବେଶ
କରୁଣ ମାଗୁଣି ପୂର,
ଏ ଯେଉଁ ଅବନୀ ଅସୀମ ଅମୃତ
ସରଗେ ଉଠେ ଉଛୁଳି,—
ବନ୍ଧୁ ବନ୍ଧୁ ଏଥୁ ବାହର ଯାଅ ରେ
ଦୁଆରୁ ଦୁଆରେ ଅଜ;
ତୋ ହୃଦମଧ୍ୟରେ ପୂରୁ ମହୀତଳେ
ଏ ଶୂନ୍ୟ ହୃଦୟରାଜ ।
ତୁ ମହା କୁବେର ଏ ବିଶ୍ୱ ବାନ୍ଧବେ,
ସକଳ ସମ୍ପଦ ବଳି;
ତୋ ପାଶେ ଭିଖାରି, ମାଗନ୍ତି ସରବେ
ତୋତହୁଁ ଅତି ଭିଖାରି ।
ବେଳ ତ ବହୁତ ହେଲଣି ଉଛୁର,
ବାଟ ବସିଥିବେ ଗୃହୀଁ;
ଦୁଆରୁ ଦୁଆରେ ମାଗି ତୁ ତୁରତେ
ଭେଟ ରେ କୁଟୀରେ ଯାଇ ।

---

# ଗଣ୍ଡିଧନ

ମାଟି ଘାଟେ ବସି ଏକା ଚଣ୍ଡାଳ ପିଲାଟି
ଅଳ୍ପ ଫଳାହାର ତାର ଖାଉଛି ମାଉଁଟି ।
ବାଲି ଧୂଳିମାଟି ସଙ୍ଗେ ମିଶିଯିବ ବୋଲି,
ବସିଛି ଖପରାଟିରେ କି ଯତନେ ଭରି ।
"କାହା ପ୍ରାଣଧନ ଅରେ ହୃଦୟର ମଣି,
କେତେ ହ୍ୱାନମାନ ଏଥି ନୋହୁଛୁ ତୁ ଘୃଣି !
ଘରେ ବୋଉ କୋଳେ ନେଇ ବସାଇ ଆଦରେ,
ଭୁଞ୍ଜାଉଥାଆନ୍ତା ଭାତ କି ସେନେହଭରେ !
ତୁ ଯେ ମାଟିତଳେ ଏତେ ହେଉ ନାରମାଣି,
ଲବେ ଏଥୁ ଅଜ୍ଞ ସେହୁ ଜାଣି ପାରୁଛୁ କି ?
ଦଇବ ଜନମ ଦେଲା ଚଣ୍ଡାଳର କୁଳେ,
ଏଭଳି କି ଲୋଟିବାକୁ ଧୂଳି ମାଟି ତଳେ ?
କି ସୁଖେ ମୁଁ ଅଧ ହର୍ମ୍ୟେ ବସି ନିଶିଦିନ
ବଣ୍ଣଶିସ୍ରି ଭୁଞ୍ଜି ମୋର ଯାଉଛି ଜୀବନ ।
ଏତକ ଅନ୍ତର ବିଧି ଏକୁ ଆନ କର,
ଏ ସାରା ସଂସାରଟାକୁ ସୃଜିଛୁ କପର ?
ଯାଅ, ବାବୁ, ଫେରିଯାଅ ଘରେ ତୁ ତୁରତେ
ବୋଉ-କୋଳେ ବସି ଭାତ ଭୁଞ୍ଜିବୁ ଉଷତେ !"

ଏତେ ଭଲ ଦୀର୍ଘ ଶ୍ୱାସ ଡେକାଲ୍ ମୁଁ ଦେଖି,
ଫଳାହାରୁ ମୁଠେ ମୋରେ ବଢ଼ାଇଲା ତାଙ୍କ ।

କି ବସ୍ତୁର କଥା ମନେ, ତାକୁ ସିନା ଜଣା;
ମୁଁ ଯେ ନେବ କି ନା, ହୃଦେ ଅଛି କଳପଣା ।

କିମିଷେ ରହିଲି ଥିରେ, ଦୋ ଦୋ ପାଞ୍ଚ ହୋଇ;
ମଙ୍ଗନେ ଧେନାଲ ଛନ୍ଦୁଁ ପାଶେ ଥାଇ ଯାଇ ।

ନାରୀଙ୍କ ଦେବାରେ ମୋର ନ ବଳିଲା ଚିତ୍ତ;
ପକାଇଲି ମୁଖେ ମୁଁ ସେ ମୁଠିଟି ତୁରିତ ।

ମାଟି ଘାସେ ବସିଲି ସେ ପିଲାଙ୍କର କୂଳେ;
ମୁଠେ ନେଇ ଖାଏ ନିଜେ, ମୁଠେ ଦେଇ ମୋରେ ।

ଏ ମରତେ ବନ୍ଧୁ, ଦୋସ୍ତ, ଥିଲେ ଅଛି ରତ୍ନ,
ଏତେ ଆତ୍ମୀୟମାନ ହୃଦେ ପାରନ୍ତି କି ସହି ?

ବେଦନାଙ୍କ ନିଅନ୍ତୁ ପଥ ବେଦନା କର ଘାତ,
ମୁଁ ତୋ ଗଣ୍ଠିଧନ, ଏ ତୋ ଗଣ୍ଠିଧନ-ସାଥୀ ।

# ପିକର ଆଦ୍ୟ ଗୀତ

କେତେ କେତେ ଦିନ ଯାଇଛି, ରେ ପିକ,
ବିତି ଏ ଜୀବନେ ମୋର;
ନିମିଷକ ଲାଗି ଶୁଣି ନାହିଁ ଏ ଯେ
ସୁଧାବାଣୀ ତୋ କଣ୍ଠର ।
ଶ୍ରାବଣ ଅସରା ଝପ ଝପ ଝପ
ଢାଳିଦିଏ କାହୁଁ ଆଣି;
ନଈ ନାଳ ପୂରି ବହି ଯାଉଥାଏ
ବରଷାର ବଢ଼ିପାଣି ।
କୁଅଁର ପୁନିଅଁ ଜହ୍ନର ଅଲୁଏ
ମନ ଧନମାନେ ହସି,
କୁମାର କୁମାରୀ କୁଆ ଖେଳେ କେତେ
ଆନନ୍ଦେ ଥାଆନ୍ତି ବସି ।
ବିଲ ମାଳେ ରଙ୍ଗ ପାଟଳ ବସନେ
କନକ କେଦାର ଶିରୀ
ହସ ହସ ମୁଖେ କାଟି ଚଷାପୁଅ
ରଖଇ ଯତନ କରି ।
ଶୀତ ସାୟାହ୍ନର ଚୁଲି ଚଉପାଶେ
କୁଟୀର କୁସୁମପନ୍ତି—
ବୁଢ଼ୀ ମାଆ ତୁଲେ ଖେଳନ୍ତି ପିଲାଏ
ନାନା କଉତୁକେ ମାତି ।
ଯେତେ ଯେତେ ସୁଖ ଏଭଳି ମହୀରେ
ସରଗ ସମ୍ପଦ ଜାଣି,
ଦିନେ ତହିଁ ପିକ ଶୁଣି ମୁଁ ନାହିଁ ରେ
ତୋର ଏ ମୋହନ ବାଣୀ ।

ଆଜି ଏବେ ବହେ ମୃଦୁଲ ମଳୟ,
କି ଦୂର ବଦେଶୁ ଆସି,
ଅବନୀ ଆକାଶେ ପୀୟୂଷ କମ୍ପନେ
ନବ ମଧୁ ପରକାଶି ।
ଡାଳେ ଡାଳେ ଆଜି ବନ ଉପବନେ
ସୁରଗ ସମ୍ପଦ ବଳି
ନବୀନ ମାଧୁରୀ ଏ ଯେତେ ତରୁଣ
କିଶଳୟେ ଉଠେ ଚଳି ।
ସୁମନେ ସୁମନେ ହୃଦ ବନ୍ଧମୟେ
ଉଚ୍ଛୁଳେ ସୋହାଗ-ସୁଧା;
ଏକଇ ଏ ଖେଳ ପ୍ରତି ଖେଳେ ଆଜି
ସରଗେ ମିଶେ ବସୁଧା ।
ଏ ଏକଲ ମେଳେ ନ ଖେଳେ କିମିତେ
କାହାର ଚପଳା ଶିଖା,
ସରଗ ମରତ ପୀୟୂଷ ସଙ୍ଗୀତେ
ଏ କି ତାନ ଯାଏ ଛୁଞ୍ଚି ?
କେତେ କେତେ ଦନ ଯାଉଛୁ, ରେ ପିକ,
ବଢ଼ ଏ ଜୀବନେ ମୋର;
ନିମିଷକ ଲାଗି ଶୁଣୁ ନାହିଁ ଏ ଯେ
ସୁଧାବାଣୀ ତୋ କଣ୍ଠର ।
ଗାଅ ଆଜି ଗାଅ, କାନନ-ଅତିଥି,
ଅଦେହ ଅମୃତ ଢେଳ;
ଶୂନ୍ୟରୁ ଉଚ୍ଛୁଳ ଶୂନ୍ୟ ଅନ୍ତରୀକ୍ଷେ
ଯାଉ ଏ ତଡ଼ିତ ଖେଳ ।

# ସାଳିଆ

ପିଲାଦିନେ ଅନୁସରି ତୀର ଯେବେ ତୋର
ବୁଲୁଥିଲି, ମନୁ ତଳେ ଯାଇନି ପାସୋରି ।
ଏବେ ମୋର ହେଲା ଅଛି ଅଧିକ ବୟସ,
ବିତି ଏ ଜୀବନୁ ଗଲା ତରୁଣ ବରଷ ।
କେତେ ସୁଖ ଦୁଃଖ ବହିଗଲାଣି ଏ ଶିରେ,
କେତେ ବେଦନାର ଗାର ପଡ଼ିଛି ଅନ୍ତରେ;
କେତେ ସାଙ୍ଗସାଥିମେଳେ ଯାଏ ମୋ ଜୀବନ,
କେତେ ଆଶା ହୃଦେ ନିତି ଖେଳେ ଅକଳନ ।
ଏସବୁ ଭିତରେ କିନ୍ତୁ ତୋ ତୀର ସମ୍ଭାର,
ନ ଗଲି, ସାଳିଆ, ମନୁ ନିମିଷେ ବିସୋରି ।
ବୈତରଣୀ, ଶଯୋପୃଳା, ଋଷିକୁଲ୍ୟା ଉଟେ,
ସୁଦୂର ସୁବର୍ଣ୍ଣରେଖା ଗୃରୁ ସଇକତେ,
କେତେ ତ ବୁଲିଲି ଏକା, ସାଥିମେଳେ ପୁଣି;
ମନ ବିନୋଦନେ ନେଲି ଦିବସ ଯାମିନୀ ।
ତେବେ ଠାବେ ତୋ ପ୍ରତିମା ଖେଳେ ମୋ ନୟନେ,
ତୋ ପ୍ରୀତି ସମ୍ପଦ ଯାଏ ପରଶି ପରାଣେ ।
ବରଜେ ତୋ ତୀର ନିଧି, ଦୂର ପରବାସେ
ରହିଲେଁ ଅଛି ଏଥି ପରିଜନ ଦେଶେ । *

---

* ସତ୍ୟବାଦୀ

ସଂସାର କରମ ଜାଲେ ବନ୍ଧା ହେଲି ଏଥେ;
ପିଲାଦିନ ସାଙ୍ଗସାଥୀ ଲେଉଟିବ କେମନ୍ତେ ?
ଯାଅନ୍ତି ସାଳଅ, ଦିନେ ଅବସର ବେଳେ,
ଭୁଲନ୍ତି ନିମିଷେ ତୋର ସେ ମୋହନ ତୀରେ ।

ସେ ପବନ୍ତୁ ଧାରି ବେନି ପିଅନ୍ତି ଉଲ୍ଲାସେ,
ସେ ଯେ ଚାହାଁ ଗଛଟି ମୋ, ବସନ୍ତି ତା ପାଶେ ।
ପିଲାଦିନ ସାଥୀ ମୋର ସଙ୍ଗାତଙ୍କୁ ଘେରି
ସେ କାଳର ସୁଖ ଦୁଃଖ କଳପନ୍ତି ତହିଁ—

ଖରାଦିନ ଖରାବେଳ ଶୀତଳ ପବନେ
ଅମ୍ବ ତୋଟା ମାଳେ ଯାଇ ବୁଲିବା ଗହଣେ;
ଶ୍ରୀପଞ୍ଚମୀ ଶ୍ରୀଫଳକି ଖୋଜି ପାଣିତଳୁ,
ହାତେ ଘେନି ବୁଲିବାର ଦୂଅରେ ଦୂଅରୁ;
ଦୋଳଯାତ୍ରା ଦୋଳିଖେଳେ ହରଷେ ବାହାର,
ଛକାଛକେ ହେବା ମୁହେଁ ଫଗୁ ବୋଳାବୋଳି;
ଧାନକଟା ବେଳେ ସୁଖେ ବାଲମାଳେ ଯାଇ
ଧାନମେଣ୍ଟି ରଚିବାର ବାଳୁତ ବଡ଼ାଇ;
କେତେ କେତେ କଥାମାନ ରଖିଛୁ ହୃଦୟେ,
ଜୀବନେ ନୋହିଲେ ଯହିଁ ଭେଟାଭେଟି ଦୁହେଁ ।

ଛାଇତଳେ ଗଛମୂଳେ ନିବସି ଗୋପନେ,
ନଦୀ ଜଳକେଳି ସୁଖେ ଘେନୁଥିଲେ ମନେ ।
ମଞ୍ଜୁଳ ଶିଖରରାଜ ଘଣ୍ଟଶିଳା ଗିରି
ଚଢ଼ୁଦନେ ଅବହେଳେ ବାଢ଼ଇ ତା ଶିରୀ ।

ଲତା ତୋ ପୁଲିନଶାଖେ, ଚୁହାଇ ଚୁହାଇ
ବସନ୍ତଦୂତଟି କେତେ ଯାଉଥାଏ ଗାଇ ।

ତୋ ତୀର ନିକୁଞ୍ଜେ ବସି ମଧୁ ଆଳାପନେ
ରବି ଅସ୍ତବେଳେ ଲଗୁଁ ଶୋଭା ଦରଶନେ ।

ଅନ୍ଧାରିଆ ହୋଇ ତହୁଁ ଆସେ ବାଟ ଘାଟ,
ଶଙ୍କିତେ ବରଙ୍କୁ ଆସେ, ସାଲିଅ, ତୋ ତଟ ।

ଘରେ ଯାଇ ସଞ୍ଜବେଳେ ଗାଆଁ ପିଲାମେଳେ
ସେ ଦିନର କଥା କେତେ ଫେଡୁଁ ବେନି ହେଲେ ।

ଖଡିଶିଅ ସାବ ଚୁଲେ ବସି ମାଆଙ୍କର
ତୋ ପୁଲିନ ଗାଥା ପଚା ବଖାଣୁଁ ସକଳ ।

ଏ ସକଳ ଅନ୍ତେ ପୁଣି ନିଶୀଥ ଶପନେ
ତୋ ମୋହନ ରୂପସୀ ନିରେଖୁଁ ସ୍ୱପନେ ।

ସବୁ ଏବେ ହୋଇଛି କି ଦୁର୍ଲ୍ଲଭ ସ୍ୱପନ,
ଯାହା ଯାହା ଦିନେ ମୋର ହୃଦୟରଞ୍ଜନ ।

ସେ ଶିଶୁ ବୟସ ଏବେ ହୋଇଛି ଅତୀତ,
ସେ ସରଳ ସମ୍ପଦ ମୋ ସ୍ମୃତି ବିଜଡ଼ିତ ।

ଏ ଯେତେ ଜୀବନଟା ଦିନେ ଫିଙ୍ଗିଦେଇ ଦୂରେ,
ବାହାରନ୍ତି ଯାଇ ସୁଖେ, ସାଲିଅ, ତୋ ତୀରେ ।

ଶିଶୁ ବୟସର ସେ ଯେ ନିଧିଟିକ ମୋର,
ସାର୍ଥକ ତା ଲାଗି ଏକା ବନ୍ଧୁ ବହୁବାର ।

ସେ ଶିଶୁ ବୟସ ଏବେ ଯାଇଅଛି ବିତ,
ଫେରି ଯେ ଆସିବ ଚିତ୍ତେ ହେବ କି ପ୍ରତୀତ ?

ବେଳେ ବେଳେ କଣିକାଏ ଯେବେ ସେ ସମ୍ପଦୁ
ଲଭନ୍ତି, ସନ୍ତାପ କେତେ ବରଜନ୍ତି ହୃଦୁ ।

କସ୍ତ ବସ୍ତୁସର ଏହ୍ନ ମଝେ ଅବତର,
ବାଞ୍ଛିତ ଜୀବନ ପ୍ରାଣେ ପାରନ୍ତି ମୁଁ ଧରି ।

ସୁଦୂରେ ସ୍ବଦେଶ ମୋର ଅସିଲେହେଁ ତେଜି,
ବିଦେଶେ ସ୍ବଦେଶ ସୁଧା ପାରନ୍ତି ଅରଜି ।

ତୋ ସମ୍ପଦ ଅନ୍ତରୁ ମୋ ଝରି ଅବିରଳ,
ବିରଚନ୍ତା ଯହିଁ ତହିଁ ସେ ମୋହନ ଗୀତ ।

ସେହି ଗୀତେ ଭୁଲି ମୋଦେ ବାଞ୍ଛିତ ବିଭବେ
ଯାପନ୍ତି ଜୀବନ ମୋର ଶତ ଶଇଶବେ ।

ଅକ୍ଷୟ ସେ ସମ୍ପଦେ ତୁ ଥାଅ, ଗୋ ତଟିନୀ,
ଦିନେ ଏ ଜୀବନେ ଯାଇ ମିଳିବଇଁ ପୁଣି ।

---

# ଲତାଟି

କେତେ ଧରେ ଟେକି, ତୁହି ପଡ଼ ପଡ଼ ଯାଉ,
ତଳେ ଲୋଟିଯାଉ, ମୁହିଁ ନ ଧରିଲେ ଆଉ ।
ତୋ ଧରିବା ପାଇଁ ଆଣି ରଞ୍ଜା ଦିଏ ଡେର,
ରଞ୍ଜା ଦେଖି ତଳେ ତୁହି ପଡ଼ିଯାଉ ଚଳି ।
ଯତନେ ମୁଁ ଚଉପାଶେ ବୁଜିଦେଇ ବାଡ଼
ବସିରହି, ବଢ଼ୁଥିବୁ ଭିତରେ ତୁ ଡାର ।
କିଏ କେତେବେଳେ ଖାହୁଁ ବାଡ଼ ଅସେ ଡେଇଁ,
ତୋ ଅଙ୍ଗୁ ନିଠୁରେ ଯାଏ ଡାଳପତ୍ର ଖାଇ ।
ମୁଁ ବଡ଼ ଆକୁଳେ ପରି ତୋ ମୂଳ ମଳାରେ
ନ ବାଧିବ ବୋଲି ତୋତେ ନିତ ପାଣି ଢାଳେ ।
ଘଡ଼ିକ ଖରାରେ ସେ ଯେ ଶୁଖିଯାଏ ପୁଣି;
ଝାଉଁଳି ପଡ଼ୁ ତୁ ତଳେ, କୋମଳ ପରାଣୀ ।
କେତେ ଦିନ ଏହିଭଳି କରୁଥିବ ନିତ,
ଟେକି ଧରୁଥିବ, ତୁହି ଯାଉଥିବୁ ଲୋଟି ?
ଅଜି ସିନା ଅଛୁ ମୋର ବେନି ପାଦେ ବଳ,
ଖୋଜି ନାନା ଉପାୟନ କରେ ଆଣି ଠୂଳ ।
ନାନା ଯତନେ ମୁଁ ତୋତେ ବଢ଼ାଏ ସତତ,
ତୋ ସେବା କରନ୍ତୁ ମୋର ଜୀବନର ବ୍ରତ ।
ଏତେବେଳେ ଯେବେ ତୋତେ ନ ପାରିଲି ରଖି,
କେଳ ଗଡ଼ିଗଲେ ଅଉ ରଖିପାରିବ କି ?

ପାଦ ଚଳୁଥିବ ନାହିଁ, ହାତ ହେବ ଜଡ଼,
ଫୁଟି ଯାଇଥିବ ଆଖି, ତୁଟିଥିବ ବଳ ।
ସେତେବେଳେ କାହୁଁ ଅଜ କରୂପେ ଭଅଇ
ରଞ୍ଜା ପାଣି ଦେଇ ତୋତେ ରଖିବ ବଞ୍ଚାଇ ?
ଏକାଠି ଦୀନେ ମୁଁ କାହିଁ ରହିଥିବ ପଡ଼ି;
ସୁଖ ଦୁଃଖ ଜୀବନର ଯାଇଥିବ ସରି ।
ନିର୍ଜୀବ ପରଶୁ ମୋର ଅବଶେଷଟିକ
ମରଣର ଶଢାନରେ ଦେଉଥିବ ଡାକ,—
"ଜୀବନର ପୂଣ୍ୟପୀଠ ସେନେହ ଲତାଟି
ନିଜ ହାତେ ଏ ଜୀବନେ ଦେଲି ଯାହା କାଟି !"

# ଆକାଶ ଦୀପ

ଘନ ଘନ କଳା ବଉଦ ତୁବକେ
ଘୋଟିଯାଏ ଯେବେ ଗଗନ-ପଟେ,
ଝୁପୁ ଝୁପୁ ହୋଇ ବରଷାର ଧାର
ଗାଆଁ ବିଲ ବନେ ଝରଇ ବେଗେ ।
ଟୁପୁ ଟୁପୁ ଟୁପୁ ଟୋପି ଶବଦେ ତା
ଆକାଶ ଅବନୀ ପାତାଳ ପୂରି,
ନିଦ ଲଗି ଅସେ ପାନ୍ଥାନ୍ତ ରାତକି;
ଯାଏ ହୃଦେ କେତେ ସପନ ଖେଳି ।
ମେଘ ଘଡ଼ଘଡ଼ି ବିଜୁଳି ଝଟକେ
କମ୍ପି ଯାଉଥାଏ ଆକାଶ ମଧ୍ୟ;
ବିଧୂତାରକା ଯେ ନିତ ରଜନୀର,
ସେ କୋଟି ସମ୍ପଦୁ ଗୋଟିଏ ନାହିଁ ।
ବରଷା ଯାମିନୀ କଜଳ ତିମିର
ଦଶ ଦଗ ଯାକ ଥାଏଟି ଭରି;
ଘରୁ ଅସି ପଦା ଅନାଇ ଦେଖନ୍ତେ,
କାହା ଚିତ୍ତ ଭୟେ ନ ଯିବ ଥରି ?
ସେତେବେଳେ ଏତେ ବାଅ ପାଣି ମାଡ଼େ
ମେଘମାଳା କୋଳେ ମଥା ଫୁଲାଇ,
ଘଡ଼ଘଡ଼ି ନାଦ ବିଜୁଳି ଝଟକ
ସବୁ ସହି, କିଏ ଏକାଟି ତହିଁ ?
ସୁନୀଳ ଗଗନ କୁଅତାର ପରି
ଅବନୀ ଆକାଶେ ବିକଶି ହେଲେ,
କଳା ମେଘମାଳେ ସରଗ ସମ୍ପଦେ
ଛଳଛଳ କିଏ ପବନେ ଚଳେ ?

ଜଳ ଜଳ ଜଳ, ଅକାଶ ଦୀପ ରେ,
ନ ମାନ ଢଳେ ଏ ପାଣି ପଥର;
ଯେତେ ଯେତେ ଅସେ ବରଷା ବଢାସି,
ତେତେ ବଳ ତେଜେ ଦଗ୍ଗୁଣ ଜଳ ।
ନିମିଷ ଯୁଗଲେ ପାହୁଯିବ ରାତି,
ବାଢଯିବ ଏ ଯେ ପବନ ପାଣି;
ପାହାନ୍ତ ପାଠଲେ ଉଦେ ହେବ ରବି,
ସରଗ ସୁବର୍ଣ୍ଣ ସମ୍ପଦ ଜିଣି ।
ସେତେବେଳେ ସିନା ଏ ରାତିଟା ଯାକ
ଜଳିବା ସାର୍ଥକ ହେବ ତୋ ଯାଇ;
ଏ ମର ଅବନୀ ଟିକ ଦୀପଟି ତୁ
ଅନନ୍ତ ଅତପେ ମିଳିବୁ ଯାଇଁ ।
ଜଳ ଜଳ ଜଳ, ଅକାଶ ଦୀପ ରେ,
ନିମିଷୁ ନିମିଷେ ପ୍ରସାରି କାୟା,
ଯେତେ ଯେତେ ଅସେ ବରଷା ବଢାସି,
ତେତେ ଦୂରେ ଯାଉ ପଡୁ ତୋ ଛାୟା ।
ଧନ୍ୟ ତୁମେ ବଣ୍ଟେ, ବାଧବା ନାରୀ ଗୋ,
ହଜିଇଥିବା କ ନାଥଟି ପାଇଁ,
ବହୁ ନିତ ଏତେ ଭାଳେଣି ପରାଣେ
ମରମ ଧୂଅନେ ବସିଛ ଗୃହିଁ !
ଜାଳି ଦେଇଅଛ ପ୍ରଣୟ-ପ୍ରଦୀପ,
ରମଣୀ ପରାଣ-ଢଇଳେ ଭରି;
ଭାଗ୍ୟେ ଯଦି ସେଣ୍ଟୁ ଦେଖା ଦେବ ଦୂରେ,
ପାଶେ ଯାଇ ପୁଣି ମିଳିବ ବୋଲି ।

କି ନିଧି ଜୀବନେ ଦେଇଛ ଢାଳି,
ଯା ଲାଗି ସାଧନା ଧିଅନ ଏତେ ?
କେତେ ଶିଶୁ ଅହା ଜୀବନ ସମ୍ପଦ
ଏ ଦୀପ ଅନଳେ ନ ଥିବ ସତେ !
ଜଳ ଜଳ ଜଳ, ଆକାଶ ଦୀପ ରେ,
ନିମିଷ ନିମିଷେ କିରଣ ଢାଳି;
ଯେତେ ତୋ ଅଶାର ଛୁଏ ଅପସର,
ତେତେ ବେଶି ତେଜେ ଯାଉଥା ଜଳି ।
ଝଡ଼େ ବା ତୋଫାନେ, ମହାସିନ୍ଧୁ ନୀରେ
ଭ୍ରମୁଥାଏ ପାନ୍ଥ ସରଣୀ ବିନା;
ଦୂରେ ନିରେଖିଲେ ନିଶାଣ ଅଲୋକ,
ପରାଣ ଧ୍ରୁବ ସେ ଭେଟଇ ସିନା ।
ସେହିଭଳି ଭବେ ଯେତେ ଯେତେ ଜନ
ପ୍ରୀତି ପାଇବାରେ ଭ୍ରମନ୍ତି ଯାଇ,
ତାଙ୍କ ପାଇଁ ପରା ତାର ସୌଧଚୂଳେ
ଏ ପୁଣ୍ୟ ନିଶାଣ ଧରିଛୁ ତୁହି ।
ଜଳ ଜଳ ଜଳ, ଅକାଶ ଦୀପ ରେ,
ପୀରତି-ତଇଲେ ଅନ୍ତର ଭରି;
ଯେତେ ଦିନ ଯାଏ ଏ ଗୂଢ଼ ଧିଅନେ,
ତେତେ ବେଶି ତେଜେ ଯାଉଥା ଜଳି ।



## ସାର ଚାହିଁବା ମୋର

କେତେ ତ ବସିଲି ଚାହିଁ ନ ଅସିଲ ବାହୁଡ଼ି;
ନିମିଷେ ନୟନୁ ମୋର କାହିଁ ଗଲ ରେ ଉଡ଼ି ।
କି ସମ୍ପଦ ଅବା ତୋତେ ଦେଇଥାଆନ୍ତି ମୁହିଁ;
ତୁ ତ ଅସି ମାଗିଥିଲୁ ମୁଠେ ଚାଉଳ ପାଇଁ ।
କେତେ ବେଳ ହେଲା ଠିଆ ଅଛ ନୀରବେ ଅତି;
ଶୁଣା ହେଲା ନାହିଁ ତଳେ ହୃଦ ଗୂଢ଼ ଭାବଟି ।
ହସି ଖେଳି ଘରମଧ୍ୟେ ଯେତେ ଘରର ଜନ
ସୁଖେ ଦିନ ନେଉଛନ୍ତି, ଅତି ହରଷ ମନ ।
କିଏ ଠିଆ ହୋଇଅଛୁ ଏକାକି ଯେ ଦୁଆରେ,
ବଦନମଣ୍ଡଳେ ହସ ଫୁଟି ନ ଉଠେ ଥରେ ।
ଯେବେ ଅବା ନିଜ ଘରେ ଯଦି ଥାଆନ୍ତା ଏବେ,
କିବା ସୁଖୀ ସଉଭାଗୀ ହୋଇ ନ ଥାନ୍ତା ଭବେ ।
ପିଅର କୋଳେ ସେ ବସି ହୃଦ ପୁଲକ ଭରେ,
ସରଗ ନିଧି କି ନୋହୁଥାନ୍ତା ମରତପୁରେ ?
ଏକୁ ବଳି ହସ ଖେଳେ ଭବ କୁଟୀର ଅଙ୍ଗ,
ଖେଳନ୍ତି କି ନ ଥାନ୍ତେ ସୁଖେ ଚାରୁ ସୁମନରଙ୍ଗ ?
ଅଙ୍ଗ ଅବା ଶୂନ୍ୟହୃଦେ ହୋଇ ଠିଆଟି ତହିଁ,
ଗୋଡ଼ ଭାଙ୍ଗି କେତେ କାଳ ନେନେ ରହିଲ ଚାହିଁ ।
ପଡ଼ି ପାଦ ଶବଦେ ଯେ ଫୁଟି ଉଠଇ ଆଶା,
ପଡ଼ି ଦୂର ବାଣୀ ପ୍ରାଣେ ଅଣେ ନବ ଭରସା ।

ଯେତେ ବା ଉଦାସ ଡାକ ପହିଁ ଶୁଭେ ଶ୍ରବଣେ,
ତହିଁ ତହିଁ ଦାଉଁ ଦାଉଁ ବୁକୁ ପଡ଼ଇ ଷଣେ ।
କେତେ ବେଳ ଏହିଭଳି ହୋଇ ଠିଆ ସେ ତହିଁ,
ବସଗେ ବଢ଼ାଇ ଦେବା ମୁଠେ ଚାଉଳ ପାଇଁ,
କହିଲା, "ହେ ବାବୁ, ମୋତେ ମିଳୁ ମୁଠିଏ ଯାଉ";
ଅଧେ କହି, ରହିଲା ତା ମୁଖେ ଅଧିକ ଆଉ ।
ତରତରେ ନେଇ ବେଗେ ତେଜି କରମ ମୋର,
ଏହି ହାତେ ଠାଉ ଯାହା ପାଶୁ କଲି ମୋ ଦୂର ।
ପଦେ ତା ମାଗୁଣି ଆଉ ନାହିଁ ମୁଖୁ ସେ ଫେରି,
ପାଦେ ହେଲେ ଛୁଡ଼ା ହୋଇ ଏଥି ନାହିଁ ସେ ରହି ।
ନିମିଷେ ନୟନ ଅଗୁ ହୋଇଗଲା ଅନ୍ତର;
ଚାହିଁ ଚାହିଁ, ସାର ଏବେ ହେଲା ଚାହିଁବା ମୋର ।

# ଶିଶୁ

କେତେ ଦୂରେ ଥାଇଁ          ଅଜଣା କି ଦେଶ
ତେଜି ତୁ ଆସିଲୁ ଏଥି;
ଏ ନବ ଗୃହରେ          ହସି ଖେଳି, ଶିଶୁ,
ବଢ଼ବରୁ ନିତ ନିତ ।

ତୋ ମୁଖ ନିରେଖି          ପରାଣ ଭିତରେ
ଖାଲି ପଡ଼ିଯାଏ ଆସି,
ରୂପ ବଇଭବେ          କେତେ ପରି ତୋର
ତୋଷି ଦେଉଛନ୍ତି ବସି ।

ବନ ଉଲ୍ଲଳତା          ଶ୍ୟାମଳ ଗହଳେ
ଏକାକୀ ଫୁଲଟି ପରି,
ଫୁଟି ଦିଶୁ ଅଛି          କେଡ଼େ ତୋଷ ତୁ ରେ,
ଏ ଘର ବାହାର ପୂରି ।

ସକାଳେ ଫୁଟିଲା          କଳିଟି ସରମେ
ଧୀରେ ଉନ୍ମୁଡାଳେ ଗୁହିଁ,
ସଞ୍ଜ ନୋହୁଁ ଅହା          ପଡ଼ଇ ମଂଜଳି
ଦିବସ—ଅତପ ସହି !

ଅଳ୍ପ ପିନା, ବାବୁ,          ଶୋଇଛୁ ପୁଲକେ,
ହସୁଛୁ ସପନେ ଭୁଲି;
ହାତ ପାଦ ସୁଖେ          ହଲାଇ ଖେଳୁଛୁ
ପଦପାଖୁଡ଼ାଟି ପରି ।

କାଲି ଯେବେ ପୁଣି ତେଜି ଏ ସପନ
ବୁଲିବୁ ସଂସାରେ ଯାଇ,
ଭଲ ମନ୍ଦ, ବାବୁ, କେତେ ଦେଖିବୁ ରେ,
କେତେ ସୁଖ ଦୁଃଖ ତହିଁ ।
ସବୁ କି ପାରିବୁ ଭଳି ସେ ଦାଉ ତୁ
କୋମଳ ପରାଣେ ତୋର ?
ଏ ସୁଖ ସପନ ସବୁ କି ଯିବ ରେ,
ଏ ହସ ତୋ ବଦନର ?
ଯା ଅନୁଜ୍ଞା ଅଛି ଯେଣୁ ତୁ ପରାଣେ
ଅଛିଛୁ ମରତପୁରେ,
ସବୁ ସହିବ ସୁଖ ସମ୍ଭବ
ଥୁଇଛୁ ସକଳ ହେଲେ;
ତହିଁ ଯେବେ, ଶିଶୁ, ରଖିଥିବୁ ନିତ
ତୋ ମନ ଧିଆନ ଢାଳି,
ସମ୍ପଦ ବିପଦେ ସୁଖ ଦୁଃଖେ ସଦା
ପୁଲକେ ପରାଣ ଭରି;
ସଂସାର କାଳିମା ବିଷ ପରଶେ ତା
ଛୁଇଁ କି ପାରିବ ଭଲେ
ତୋ ପରାଣେ ଯେଉଁ ପରଶମଣି ଟି
ଫୁଟିଉଠେ ନିରନ୍ତରେ ?
ବନ ପର୍ବତରେ ଭ୍ରମିବୁ ପୁଲକେ;
ବନତରୁକୁଞ୍ଜେ ବସି,
ବନଫୁଲ ସବୁ ଶୋଇବୁ ନିରତେ
ମନ ସନମାନେ ହସି ।

ନଈକୂଳେ ବସି ଜଳ କଳଗୀତ
ଶୁଣିବୁ ପୁଲକଭରେ;
ଶୁକ ପିକ ଗୀର କାନନ ଉଡ଼ାଳେ
ଗାଉଥିବେ ଡାଳେ ଡାଳେ ।

ପ୍ରଦୋଷ ସମୀରେ ହ୍ରଦ ଊର୍ମିମରେ
ଗଗନ କନକ ଅଭ୍ର
ଚପଳ ସମ୍ପଦେ ଖେଳୁ ଅବିରଳ
ଦିଶୁଥିବ ମନଲୋଭା ।

ସାଗର ସିକତା ସୁଖେ ତୁ ବିହର
ମିଶିବୁ ତରଙ୍ଗେ ଯାଇ;
କଳବେଣୁ ନାଦେ ଊର୍ମିମାଳେ ଭାସି
ଯିବୁ ରେ ଜଳଧି ହୋଇ ।
ଗଗନୁ ଗଗନେ ଉଡ଼ି ଅଲକ୍ଷିତେ
ରବି ଶଶୀ ତାରକାରେ
ଏ ବିଶ୍ୱସଂସାର ଅନନ୍ତ ବିତାନେ
ତାଳି ହୋଇଯିବୁ ହେଲେ ।
ଭଲ ମନ୍ଦ ଯେତେ ଅଛଇ ଜଗତେ,
ସୁଖ ଦୁଃଖ ଜୀବନର,
କଣିକାଏ କେବେ ତହୁଁ କି ରେ ହୃଦ
ପରଶିପାରିବ ତୋର ?
ଆଜ ଏବେ, ବାବୁ, ଶୁଅ ତୁ ପୁଲକେ
ହସ ରେ ସପନେ ଭୁଲି;
ହାତ ପାଦ ସୁଖେ ହଲାଇ ଖେଳ ରେ
ପଦ୍ମପାଖୁଡ଼ାଟି ପରି ।

---

## ବାସି

ଗୃହୁ ପୁଷ୍ପରାଜ୍ୟେ ପୁଣ୍ୟ ରାଣୀ ଗୋ. ମାଳତି,
କାହା ପାଇଁ ଏତେ ତୋର ସେନେହ ପୀରତି ?

ଅନାଇ ରହିଛୁ ନିତି କାହା ଆସିବାର,
ଗୁନ୍ଥି କାହାପାଇଁ ଏତେ ରଖୁ ପ୍ରୀତିମାଳ ?
ନୟନ ପଲକେ ସୁଖେ ରହିଛୁ ଧିଆନେ,
କି ଦୂର ପ୍ରତିମା ମଧୁ ପ୍ରେମିକ-ନୟନେ ?
କିପାଇଁ ତୋର ଗୋ ଏହି ଗୃହେଁ ବସିବାର,
କି ବାଞ୍ଛା ସିଦ୍ଧିକି ଏତେ ଜୀବନ ଜାଗର ?
ଦିବା ନିଶି ଅବିରଳ ବସି ଯୋଗାସନେ
ଅଟଳ ସାଧନା ସାଧୁ କି ପୁଲକ ମନେ ?

ନିତି ଶ୍ରମେ ଗୁନ୍ଥା ମାଳ ଶୁଖେ ତୋର ନିତି,
ଆଶା ମାତରେ ଟି ଦିନୁ ଦିନ ଯାଏ ବିତି ।
ପୁଣି ଆଶା ଧରି ବସୁ, ସେ ପଥ ଅନାଇଁ;
ନୂଆ କରି ଗୁନ୍ଥି ରଖୁ ମାଳଟି ତା ପାଇଁ ।
କିଏ ସେ ଏପରି ଅଛୁ ଏ ବିଶ୍ୱଭିତର,
ତୋର ଏତେ ସାଧନର ଉଚିତ ପାତର ?
ତୋ ଜୀବନେ ଅଛୁ ଯଦି ଏତେ ଗୃହେଁ ବସା,
ଏ ମହା ସାଧନା ସଙ୍ଗେ ଏ ସେନେହ ଆଶା,
ତୋ ହାତର ଏତେ ମାଳା ବାସି ହୁଏ ଯେବେ,
ମୋ ପରାଣ ନିରାଶାର ହେତୁ କିବା ଭବେ ?

---

# ନ ପାରିବ ଭେଟି ?

ପାଣି ପବନର କିଛି ନାହିଁ ଯେ କଳନା,
ଭୂମିରେ ଦିବସ ପଡ଼େ ରାତିପରି ଜଣା;
ଘନ ଘନ ଗଗନେ କି ଚମକେ ବିଜୁଳି,
ଘଡ଼ି ଘଡ଼ି ଶୁଭେ ସିଂହ ଗରଜନ ଭଳି ।
ଶଇଳ ଶ୍ୟାମଳ ଚୂଳେ ଜଳଦ ବିହାରେ,
ତରୁଦଳ ଏକାପରି ଦିଶଇ ଅକାରେ;
ପୂର ବହୁଅଛି ପାଣି ନଈ ନାଳ ଧରି,
ବାଟ ଘାଟ ଭଲେ କାହିଁ ନ ହୁଅଇ ବାରି ।
ଏସନ ସମୟେ ମୁଁ ଯେ ଚାଲଇ ଏକାକୀ;
କେତେ ବଡ଼ ପଡ଼ିଅ ସେ,—ଥାଉ ନାହିଁ ଅଖି ।
ବରଷା ଅସାରେ ସବୁ ଲିଭି ଦୂର ପାଣେ,
ବାଡ଼ ବଣ ତରୁ ଗିରି କାହିଁ ତ ନ ଦିଶେ ।
ପାଣି ପବନରୁ ଅଶ୍ରା ନେବାପାଇଁ ଭଲେ
ତରୁମୂଳ, ବନସ୍ଥଳ ଖୋଜି ତ ନ ମିଳେ ।
ଏକଇ ଧିଆନ ଧରି ଚାଲଇ ମୁଁ ପାଦ,
ପ୍ରତି ପଦେ କରୁଥାଏ ଶତ ପରମାଦ ।
ବାଟେ ଚାଲଇ, ବା ହୋଇଲଣି ବାଟବଣା,
ଜମିଟେ ଚରଣତଳେ ନ ପଡ଼ଇ ଜଣା ।।
କେଣେ ହେଲେ ଥାଆନ୍ତା କେ ପ୍ରାଣୀ କି ପାଦପ,
ପଚାରି ବୁଝନ୍ତା ପଥ ମୁଁ ଭ୍ରାନ୍ତ ମାନବ ।

କେତେ ଦୂରେ ପଡ଼ିଅଛି ବାଆ ପାଣି ତଳେ
ବୁଢ଼ୀଟିଏ ନଇଁ ନଇଁ ଗୃଲେ ଧୀରେ ଧୀରେ ।

ବାଛୁ ବାଛୁ ଘାସବଣୁ ତୋଳୁଛି ପତର;
ଅଣ୍ଟିରେ ପୂରାଇ ତାକୁ ନଉଛି ଅବର ।

ବଦନେ ବିଷାଦ ଅବା ହାସ ନାହିଁ ତଳେ,
କିଏ ଏ ଦୁଃଖିନୀ ଅଛି ଏ ମହୀମଣ୍ଡଳେ ।

ଏତେ ପାଣି ପବନେ ଯେ ହୋଇଛି ବାହାର,
କୁଟୀର ଦୁଆରେ ବସି ପାରିଥାନ୍ତା ତାର ।

ଖଣ୍ଡେ ଦୂରୁ ଯେତେବେଳେ ଦେଖିଲି ସେ ମୋତେ,
ଏକାପରି ଗୃହିଁ ବୁଢ଼ୀ ରହିଲା ଚକିତେ ।
"ଏତେ ପାଣି ପବନରେ ଏକୁଟିଆ ଅଜ
କାହିଁକି ଅସିଲ, ତାତ୍ର, ଗାଆଁ ଘର ତେଜ ?
ଗୋଡ଼ ହାତ କୋଳ ମାରିଯିବଣି ନଜର,
କପାଇଁ ଅସିଲ, ପୁଅ, ଏଡ଼େ ସୁକୁମାର ?"
"ବାଟବଣା ହୋଇ ମୁହିଁ ଅସିଛି ବାହାର",
କହିଲରୁ, ମୋ ସଙ୍ଗତେ ବାହାରିଲି ନାରୀ ।
ଅଣବାଟେ ଅମଡ଼ା ସେ ଗୃଲି ଅଗେ ଅଗେ
କେତେ ଦୂରେ ଯାଇ ବାଟେ ମିଳିଲି ସରାଗେ ।
ପଥେ ବେନି ଅଗ ପଛ ହୋଇ ଯିବାବେଳେ
କୁତୂହଳେ କେତେ କଥା ପୁଛିଲା କଲି ତାରେ ।
ଉଦାସ ନୟନେ କେତେ ଲୁହର ଲହରୀ
କହିଲା ସେ, ଘରେ ତାର କେହି ଅଉ ନାହିଁ;

ଛନୋଟି ପୁଅରୁ ହେଲେ ନ ରହିଲ ଜଣେ,
ସେଲଗି ଅନ୍ଧାର ଖୋଜି ବୁଲେ ବନେ ବନେ ।

"ଏକୁଟିଆ ପଡ଼ିଛନ୍ତି ରେ ସକଳ ହରାଇ,
ଏ ପୋଡ଼ା ପେଟର ଜାଳା ତଳେ ଗଲା ନାହିଁ ।"

ଏତେ କହି, ନୟନରୁ ତା ଲୁହ ଯାଏ ଝରି;
କଣ୍ଠରୋଧ ହୋଇ କଥା ନ ପାରଇ ସ୍ଫୁରି ।

ସେ ଦୁଃଖ କାହାଣୀ ଶୁଣି, ବିଷାଦ ପରାଣେ,
ଦୀର୍ଘଶ୍ୱାସଟିଏ ଯତ୍ନେଁ ତେଜିଲି ମଉନେ,

ଫେରି ଚାଲିଗଲା ନାସି ନେତ୍ରୁ ନୀର ପୋଛି,
ଗଲାବେଳେ ପଦେ ହେଲେ କହି ନାହିଁ କିଛି ।

ମୁହିଁ ଦଣ୍ଡେ ଠିଆ ହେଲି ଥକା ମାରି ତହିଁ,
ପଛୁ ତାର ଯିବା ବାଟେ ବିଷାଦେ ଅନାଇଁ ।

ନିମିଷକେ ବରଷାର ଧାରାତଳେ ତହୁଁ
ଲୁଚିଗଲା ବୁଢ଼ୀଟି ସେ, ନ ଦିଶିଲା ଅଉ ।

ସଖାଙ୍କ ସଙ୍ଗତେ ଯାଇ, ନିଶି ଆଳାପନେ
ଯାପିଲି ରଜନୀ ସୁଖେ ସଉଧ ଭବନେ ।

ଗଗନୁ ବରଷାଧାରା ଝରେ ଅବିରଳ,
ଘଡ଼ଘଡ଼ି ଶବଦେ ଯେ ଲାଗୁଥାଇ ଡର ।

କାହିଁ ସେ ରହିଲା ଅନ୍ଧା ଫେରିଯାଇ ତହିଁ
ପଡ଼ିଥିବ ବୁଢ଼ୀଟି ସେ, କେହି କାହିଁ ନାହିଁ ।

ତା ଭୁଲେ ନିମିଷେ ଅଉ ଯୁଗଳ ଦ୍ୱାରରେ
ବୁଲିଥାନ୍ତି ସେହିଭଳି ବାଅ ପାଣି ତଳେ ।

ଆଉ କଥା ଦୁଇ ପଦ ଅଧର କମ୍ପନେ
କହିବାର ଶୁଣିଥାନ୍ତି ତା ଶୁଷ୍କ ଲପନେ ।
ଆହା ସେ ଦୁଃଖିନୀ ଏକା ସେ ଭୀମ ପ୍ରାନ୍ତରେ,
ଥରି ଯାଉଥିଲା ଅଙ୍ଗ ବାଆ ପାଣି ଜାଡ଼େ !
ଦୁଇ ପତ୍ର ଶାଗ ମୁହିଁ ଘାସବଣୁ ତୋଳି
ଯତନେ ଅଣ୍ଟିରେ ତାର ଦେଇଥାନ୍ତି ଭରି ।
ଛିଣ୍ଡା କନା ଖଣ୍ଡିକେ ତା ମେଖଳା ଯୋଗାଇ,
ବୟସ ବିଷାଦ ଭାରେ ପଡ଼ିଅଛି ନଇଁ ।
କାହିଁ ଏବେ କେତେ ଦୂରେ ରହିଲା ବୁଢ଼ୀଟି;
ବାରେ କି ଜୀବନେ ଆଉ ନ ପାରିବ ଭେଟି ?

---

# ଭାଇ

ମରଣେ ମୁଦ ତା ନୟନଯୁଗଳ
ଅନ୍ତିମ ଝଲକେ ଶୋଇଛନ୍ତି ଭାଇ,
ସୋଦର ବନିତା ତନୟ ସେନେହ
ପରାଣୁ ନିଠୁରେ ବିସୋରି ଦେଇ ।

କୁଟୀରୁ ଅନ୍ତର କରି ନେଇ ଦୂରି
ଶ୍ମଶାନେ ଦେବେ ସେ ସେ ତନୁ ଢାଳି,
ଘୃତବାସୀ ଶବ ହୃଦ ଭେଦାଭେଦ
ନିରଦୟ ଚିତା ଅନଳେ ଜାଳି ।

ତରୁଣ ବନିତା କରୁଣ ବିଳାପେ
ପୂରଛନ୍ତି ଛାପିତ କୁଟୀର ସାରା;
ନିତ ଯହିଁ ଖେଳେ ସ୍ନେହ ସୁଧା ହାସ,
ବହେ ଅଜି ଶୋକ ଲୋତକଧାରା ।

ଭାଇଟି ନୀରବେ ଠିଆ ହୋଇ ପାଶେ
ଉଦାସେ କି ଅବା ଭାଳଇ ମନେ;
ଯୁଗଳ ଜୀବନେ କେତେ ତ କାନ୍ଦନ୍ତି,
ଲୁହ ନାହିଁ ଅଜି ନୟନକୋଣେ ।

କରମେ ବରମେ ଶୟନେ ସପନେ
ଭାଇଟି ସେ ଏକା ଧିଅନେ ତାର;
ମୋହନ ନିବେଶେ ବହିଯାଏ ହୃଦେ
ସୋଦର ନିସର୍ଗ ସେନେହଭାର ।

ଅଧିକୁ ଅଧିକ ବଢ଼ଇ ବିଳାପ,
ଝଣ୍ ଝଣେ ପୁଣି କାନ୍ଦଇ ଅସି;
ଭାବଛି ନୀରବେ ହୋଇଛୁ ଠିଆ ଢ,
ବନ୍ଧୁ ବାର ନେନେ ନ ଉଠେ ଭାସି ।

ପ୍ରତିବାସୀ ଜନେ ଉଠାଇ ଶବଟି
କୁଟୀରୁ ଅନ୍ତର କଲେକ ଛନ୍ଦୁଁ;
ଅଶ୍ରୁନୀରେ ଗଲା ଝନ୍ତ ଭାଲ୍ ଛନ୍ଦ,—
“କା ଲାଗି, ଭାଇ, ଏ କୁଟୀର ଅଜ ?”

---

# କୋଇଲି

ନାଚ ଏ ପୀୟୂଷଧାର ଢାଳୁ ତୁ, କୋଇଲି,
ଗଛଡାଳେ ଲୁଚି ରହି;
ନଦୀ ଗିରି ବନ ବିଲ ସରସୀ ପ୍ରାନ୍ତର
ଉଚ୍ଛୁଳି ପଡ଼ଇ ତହିଁ ।
ଫୁଲ୍ଲ ଫୁଲେ ପରଶି ସେ ମଧୁ କିଶଳୟେ
ନିମିଷେ ଯାଉଛୁ ଖେଳି,
ପଲ୍ଲବ ଅଙ୍କୁର ଯେତେ ବନ ତରୁ ଶାଖେ
ମୋହନ ଶ୍ୟାମଳେ ବୋଳି ।

ଏ ଦୀନ ବେଶେ ତୁ, ପିକ, ଅସୀମ ସମ୍ପଦ
ଲୁଚାଇ ରଖିଛୁ କାହିଁ,
ନବୀନ ବସନ୍ତେ ଗୁଚ୍ଛ କୁସୁମ ବିକାଶେ
ଅଛି ବିତରିବା ପାଇଁ ?
ଇନ୍ଦ୍ରଧନୁ ସୌଦାମିନୀ ପୁଞ୍ଜ ବିଧୁକରେ
ସରଗେ ମରତେ ପରି
ତୋ ସ୍ୱର ସଙ୍ଗତେ ଅଣି ସମାନ କି ନିଧି
ବାଢ଼ି ନ ପାରିବ ଧରି,

ଭଣିଛାଏ ସେଥୁ ଏବେ ଅନ୍ତର ସରଣେ,
ସରସ ଏ ଜନ୍ମ ମୋର,
କବା ମୁଁ ହୁଅନ୍ତ ପୁଣି, ସେ ଗୀତ ପୀୟୂଷ
ପିଉଥିଲେ ନିରନ୍ତର ।

---

# ପ୍ରଶ୍ନ

କିପାଇଁ ଢଳୁଛୁ ଏଭଳି, ରେ ତରୁ,
ପଦେ କହୁ ନାହୁଁ କଥା ?
ଯେତେ ମୁଁ ପଚାରେ, ଶୁଣୁ ନାହୁଁ କିଛୁ,
ନାଉଁ ନିରନ୍ତରେ ମଥା ।

ଆସିଥିଲ କାଲି ମନ ସଜନମାନେ,
କହିଲୁ ନାହିଁ ତୁ କିଛି;
ଆଜି ତ ଆସିଛୁ, ଆସିବ ପୁଣି ରେ
ଯେତେ ଦିନ ନ ଶୁଣିଛୁ ।

ନାଚୁ କେତେମନ୍ତେ ସରସ ପସ୍ୱଣେ,
ମୁହିଁ ବସିଅଛି ଗୃହିଁ;
ଛୁହ ଲୋଟିଯାଉ ପ୍ରାଣ ଗଦଗଦେ,
ମୁଁ କିଛି ବୁଝଇ ନାହିଁ ।

ସେନେହ ପରଶେ ବହ୍ନ ସମୀରଣ
ଖେଳେ କି ପୀରତି ରଙ୍ଗେ;
ମୁହିଁ ବସିଥାଏ, କ୍ଷଣେ ସେ ତରଙ୍ଗ
ପରଶିଯାଏ ମୋ ଅଙ୍ଗେ ।

ଅନାଇ ରହିଛୁ ନୀଳ ନଭ ପଟେ
ନୋଇଁ ନାଲି ମେଘ ମଥା;
ସୁଦୂର ଅଦୃଶ୍ୟ ଡାକଦଏ କାହିଁ
ପିକ ତା ପୀରତି ଗାଥା ।

ଶଗଡ଼ିଆ ଯାଏ ଅଡ଼ାଇ ଶଗଡ଼,
ଗେଇ ମଧୁଗୀତ ଧ୍ୱନି;
ଖେଳି ଶିଶୁଗଣ ବୁଲନ୍ତି ସବୁରେ,
ମୋ ହୃଦ ଅମୂଲ୍ୟ ମଣି ।

ମୁହିଁ ଦେଖିବ କପାଁ ତୁମ ହୋଇ ଏଥି
ଶୂନ୍ୟେ ବସିଥିବ ଗୃହିଁ ?
ପରାଣି କହୁଛ ସେ ମୋର ପ୍ରଶ୍ନଟି
ଉଭେଇ ଯାଉଛୁ କାହିଁ ।

ତୁହି ନାଚୁଥାଉ ଗୋ ନିଜ ପୁଲକେ,
ପଦେ କହୁ ନାହୁଁ କଥା;
ଅତୃପ୍ତ ହୃଦେ ମୋ ଖେଳି ଅସେ ତୃପ୍ତି,
ପୂରି ଯାଏ ଅପୂର୍ଣ୍ଣତା ।

କେତେ ଦିନ ସୁଖେ ନାଚୁଥିବୁ, ଉଲୁ,
ତୁ ନିତ ନୃତ୍ୟେ ଏଭଳି,
କେତେ ଦିନ ଅଙ୍ଗେ ଦୂର ସମୀରଣ
ଧୀରେ ଯାଉଥିବ ଡଳି ?

କେତେ ଦିନ ମୁହିଁ ଆସିବି ଗୋ ପାଶେ
ଚୁପଚେ ପୁଚ୍ଛିବା ପାଇଁ;
ଫେରି ଯାଉଥିବି, ପରଶୁ ମୋର ସେ
ପ୍ରଶ୍ନଟି ପାସୋରି ଦେଇ ?

ଅଶ୍ରୁ ଅଶ୍ରୁ ଯେବେ ମୋ ବଳ ଟିକକ
ଚରଣୁ ପଡ଼ିବ ଖସି,
କୁଟୀର କୋଣେ ମୁଁ ଏକାକୀ ହୋଇ ରେ
ରହିବି ମଉନେ ବସି;

ସେତେବେଳେ ସିନା ଜାଣିଷ୍ଟୁ ଜାଣିଚେ
ପାଟଣ କୋଣ୍ଡ ନେବା ଚୋଟେ;
ତୁରତ ତ୍ରୃପ୍ତିରେ ମିଶାଇ ମୁଁ ଦେବ
ମୋର ପଣ୍ଟୁରବା ପେଟେ ।

ଏ ସଂସାରୁ ପୁଣି ଯିବି ଯେବେ ଚୁଲି,
ମୋ ଶେଷ ମେଲାଣି ନେଇ,
ସେ ଦୁର ରାଇକେ ବାରେ କି, ରେ ଭଲୁ,
ଦେଖା ଦେବୁ ଯାଇ ତୁହି ?

---

# କୁଆ ଓ ଶୁଆ

ସତ ପାହାନ୍ତରୁ ତୁରତେ ଆସି,
ଉଡ଼ିଯାଏ କୁଆ ପବନେ ଭାସି ।
ଡାଳୁ ଡାଳେ ବସି, ନାଚି ଶରୀର
ଚରଣ ଯୁଗଳେ ପରଶେ ତାର ।
ସୁଦୂର ଗଗନୁ ଆଣଇ ଲୋଡ଼ି,
ରବି ଉଇଁବାର କନକ ଶିରୀ
ବନ ପରବତେ ତଟିନୀ ତୀରେ
ଉଡ଼ି ଉଡ଼ି ଯାଏ ଫୁଲବଣରେ ।
ଶୁଆ ପୁଣି ତରୁ ଗହଳେ ଗାଇ,
ବନ ଗିରି ପଦା ଦିଅଇ ମୋହି ।
ବିଲେ ବିଲେ ବୁଲି ସରାଗେ ନାଚି,
ଢାଳେ ଚଷାକାନେ ସରଗ ଗୀତ ।
ନଈ ପୋଖରୀରୁ ପିଅଇ ପାଣି,
ଉଡ଼ି କହିଯାଏ ପୀରତି ବାଣୀ ।
ଘର ପଞ୍ଜୁରୀରେ ବସଇ ଆସି,
ସୁମତି ଛାନନ ସମ୍ପଦରାଶି ।
ଦୁହେଁ ଦୁହିଙ୍କି ବଳି ବଳିଆର—
କୁଆ ଛଇଳ, ଶୁଆ ସୁକୁମାର ।
ଦେଖଏ ବେନିଙ୍କ ସେନେହ ଡୋରେ
ବନ୍ଧା ଏ ମରତେ ଅଟବୀ କୋଳେ ।
ତେଜି ଯାଉଛ ବଇରି-ବେଭାର,
ମନ ବିନୋଦନେ ବିତାଅ କାଳ ।
ଏକ ତରୁଡାଳେ ବେନିଏ ବସି,
ମିଶା ମଧୁସ୍ୱରେ ଯାଅ ରେ ମିଶି ।

## ଦୁଃଖୀ

ଦୂର ଧନେ ଥାରେ          ନ ମିଳେ ମୁଠିଏ
    ଉଦର ପୂରାଇବାକୁ;
ଚିରା କନା ଖଣ୍ଡି          ବେଢ଼ାଇ ଉଦାସେ,
    ଭୂଷଣ କରନ୍ତି ତାକୁ ।
ଗାଆଁରୁ ଗାଆଁକୁ          ବୁଲି ସେ ଯାଉଛି
    ବଦନ ପୁଲକେ ଗୀଳି,
ଅଧର ଯୁଗଳୁ          ଦୁଃଖୀ ପରାଣର
    ଅମୃତ ବାରିଧି ଢାଳି ।

ଗଛ ଗୁଇ ତଳ          ମୃତ୍ତିକା ତଳପେ
    ଶୋଉଛି ସପନେ ମଜ୍ଜି,
ତାକୁ ତାକୁ ଅଗେ          ବରଷି ଯାଉଛି
    ସୁମନ କଳିକାରାଜି ।

ପର ସୁଖଶିରୀ          ପରାଣ ସମ୍ପଦେ
    ନୟନ କମନେ ହସି,
ନିମିଷକ ଦୁଃଖ          ଭୁଲେଣି ଦେଖିଲେ,
    ନିଜେ ଭାଳୁଥାଏ ବସି ।

କାନନ ଉଡ଼ାଲେ          ପିକ କଣ୍ଠ ତାନ
    ଶୁଣଇ ଶ୍ରବଣ ଡେରି,
ତଟିନୀ ଅସ୍ଫୁଟ          ସଙ୍ଗୀତେ ମଜ୍ଜଇ
    ଜାଗ୍ରତ ସପନେ ଭୁଲି ।

ଶଇଳ ଶ୍ୟାମଳ          ଶିଖରେ ଅଭେଦ୍ୟ
    ପାଷାଣ ଶଙ୍କଳେ ମିଶି,

ଅବନୀ ଗଗନ ମୋହନ ମାଧୁରୀ
ପଶ୍ରଣେ ଢେଳାଇ ବସି ।
ବନ ତରୁ ଲତା ଫଳ ମୂଳ ଦେଇ
ଲୋଟି ଯାଉଥାଏ ବନେ,
ଭୁଞ୍ଜି ତା ହରଷେ, ବନ ଝର ପାଣି
ପିଅଇ ତୃପତ ମନେ ।
ରଜା ମହାରାଜ ଅଗ୍ରଜଙ୍କ ଧନେ
ନାଶିଲ ରାଇଜ ଯେବେ,
କିଏ ରଜା ହେବ ବସିବ ଗାଦିରେ—
ଭାଳେଣି ପଣ୍ଡିତ ସବେ ।
ହାତୀ ବୁଲୁଥିଲା ଗାଆଁ ବିଲ ବନେ
କନକ କଳସ ଧରି,
କେ ଅଛି ପାତର ରାଜଗାଦିକି, ସେ
ଶିରେ ଢାଳି ଦେବ ଡାଳି ।
ଶୋଇଛି ଦୁଃଖୀଟି ମୁଦି ବେନି ଡୋଳା
ମୃତ୍ତିକା ତଳପେ ଅହା,
ବାହୁ ଉପାଧାନେ ମଥା ଅବରୋହି;
ବିଟପୀ ଢାଳଇ ଛାୟା ।
ଫୁଲ ଫୁଲ ବୋହି ଯାଉଛି ପବନ,
ଧୀରେ ତା ପରଶି ତନୁ;
କଳ ଗୀତେ ଚଳି ଯାଏ ନିର୍ଝର, ତା
ଭାଳେଣି ଅଧର ମନ୍ତ୍ର ।
ଭାଙ୍ଗିଲା ତା ନିଦ, ଢାଳି ସେ କଳସ
ସପନ ନାହିତ ଶିରେ;
ବସାଇ ଦୁଃଖୀଙ୍କୁ ସ୍ୱର୍ଣ୍ଣ ସିଂହାସନେ
ପୂଜିଲେ ଫେରିଲ ପୁରେ ।

---

# ଯୁଗଳ କଳିକା

ତରୁ ଶ୍ୟାମ କିଶଳୟେ ଯୁଗଳ କଳିକା,
କାନନ ସାମ୍ରାଜ୍ୟ ନବେ ବିମଳ ତାରକା ।

ଏକେ ଅନେ ବିମୋହନେ ଗୁନ୍ଥା ପ୍ରୀତିଡୋରେ,
ସୁମନ ସୋହାଗ ବହି ଅଧରୁ ଅଧରେ ।

ତରୁଣ ବିଭବ କାର ନ ଫୁଟିଛି ବାସ,
ପାଖୁଡ଼ା କେଶର ଶିରେ ନୋହିଛି ପ୍ରକାଶ ।

ଭବିଷ୍ୟ କଳ୍ପନା କେତେ ସମ୍ବାଦ ହୃଦୟେ,
କୁସୁମପ୍ରେମିକ ଅଳି ଦେଖି ଉଡ଼ିଯାଏ ।

ମୃଦୁଳ ମଳୟ ଧୀରି ବହୁ ଅବିରତେ,
ଯୁଗଳ ସୋଦର ତନୁ ଖେଳାଏ ଶଙ୍କିତେ ।

ଅତି ଅନ କିଶଳୟେ ପ୍ରୀତି ସନ୍ଧଯୋଗେ
କେତେ ଅପେ ନବ କଳି ବିକଶି ସରାଗେ ।

କିବା ସେ ସମ୍ପଦ ହେତୁ ସାରା ଉପବନେ,
ନ ଦେଖେ ଦୋସର କେବି ଅବନୀ ଗଗନେ ।

ଏବେ ଅହା କାହା କର କଠୋର ପରଶେ
ଛିଡ଼ି କଳିଟିଏ ଡାଳୁ ପଡ଼ିଛି ନିମିଷେ ।

ଅନ କଳିଟି ସେ ଡାଳେ ଅବନତ ମୁଖେ
ସୋଦର ମଳିନ ତନୁ ନିରେଖଇ ଦୁଃଖେ ।

ବିହୋଇଛି ପରାଣର ସକଳ ବାସନା,
ସୁମନ ସୁରଭି ହୃଦେ କି ଅଜ ଭାବନା ।

କାହିଁ ଏଡ଼େ ସ୍ଥାନମାନ ଏକାକୀ କଲନ୍ତି ?
ହଂସ ତନ୍ତୁ ଡାଳୁ, ଯାଅ ଭୂଇଁ ତଳେ ଲୋଟି ।
କଣ୍ଠଲଗ୍ନେ ବସି ଯେବେ ସୋଦର ଗହଣେ,
ସ୍ୱପନ ସମ୍ପଦ ଭୋଗ ନୋହିଲ ଜୀବନେ,
ଅନୁପମ ସପନେ ଶୋଇ ଧୂଳି ମାଟି ତଳେ,
ସେ ସୁଖ କଣିକା ଅଜ୍ଞ ଭୁଞ୍ଜ ରେ ନରୋଳେ ।

---

# କାଳିଜାଇ

"ଭଲ କର ନାଅ ବୁଢ଼ା, ରେ ନାଉରି,
ଝିଅକୁ ମାଡ଼ୁଛି ଡର;
ଗଡ଼େ ଗଡ଼ଲୋକେ ଗୁହିଁ ବସିଥିବେ,
ଝିଅ ଯିବ ଶାଶୁଘର ।"
ଭଲ କରି ନାଅ ବୋହୁଛି ନାଉରି,
ଉଲେଇ କରୁଛି ଠିଆ;
ମାମୁଁଭଣଜାର କୋଣରୁ ଅସେ ଲୋ
ବୋହି ଘୁଲୁଘୁଲୁ ବାଅ ।
ଦିନ ଦଶ ଘଡ଼ି ହେଲାଣି ଠି ଅସି,
ଖରା ମାରେ ଗୁଁଜି ଗୁଁଜି;
ପାଞ୍ଚ କୋଶ ବାଟ ଯିବାକୁ ଅଛି ଲୋ,
ବେଳ ତ ପାଇବ ନାହିଁ ।
ନାଉରି ବାପୁଡ଼ା କାତ ମାରୁଅଛି,
ଉଦାସେ ଗାଉଛି ଗୀତ;
ନାଅ ଉଡ଼ିଯାଏ ପବନ ସ୍ରୋତେ ଲୋ,
ଲଙ୍କା ନ ଯଡ଼ଇ ବାଟ ।
ମାଅ ଭଉଣୀଙ୍କି ସାଥୀ ସଙ୍ଗାତଙ୍କୁ
ଝିଅ ଯେ ଆସିଛି ଛାଡ଼ି;
ନାଅରେ ବସି ସେ ତାଙ୍କର କଥା ଲୋ
ଭୁଏ ନିରନ୍ତରେ ଭାଳି ।

ମାଅ ଡଉଣୀଏ, ସାଥୀ ସଙ୍ଗାତେ ସେ
ରହୁଲେ ଦୂରଦେଶେ କାହିଁ;
ପରଦେଶ ନୋହୁଛି, ଅଉ କା ଦିନେ ଲୋ
ଫେରି ସେ ଦେଖିବ ଯାଇ ।

ନାଅ ଶୁକଅଛି ପବନ ସମାନେ,
ମୁହୂର୍ତ୍ତେ ନ ହୁଏ ଥୟ;
ଛୁଆ ଯେତେ ତାର ବଣ ପାହାଡ଼ ଲୋ
ଅନାଇ ଦେଖନ୍ତି ଝିଅ ।

ଘଣ୍ଟଶିଳା-ଶିଖେ ଶୁହିଁ ସେ କହନ୍ତି,
"ଦିଅ ରେ ମେଲାଣି ମୋତେ;
ଭେଟ ଅଉ ଦିନେ ନୋହିବ ଜୀବନେ,
ଯାଉଛି ଘୋର ବନସ୍ତେ ।"
ସାଳିଅ ନଈ ତା ନିତଦିନ ସାଥୀ,
ମୁଖେ ସେ ବୁଲଇ କୂଳେ;
ବେଳେ ମୁଏ ତାର ସ୍ନାହାନ ସାରି ଲୋ,
ହସି ଲେଉଟଇ ଘରେ ।
ଭାଲିଅକାରୁ ସେ ଶୁଲ ଯେ ଅଇଲା,
ଦେଖି ତ ନାହିଁଛି ତାକୁ;
ଭାବ ଖ୍ୟାତ ନଈ, ନାଅଁଟି ତାର ଲୋ
ନିତ କୋଡ଼ କୋଣେ ତାକୁ ।
ମାଅ ଭଗବତୀ- ପୀଠ କୂଳେ ତାର,
'ଜଗତତାରଣୀ' ନାଅଁ;
ତାଙ୍କ କହୁଥାନ୍ତି, ନୋହିଲା ଅଉ ଲୋ,
"ସାହା ମୋ ଥିବୁଟି, ମାଅ !"

ନାଅ ଅସି ହେଲ  ପ୍ରବେଶ ଦଣ୍ଡକେ
ଚଢ଼େଇହଗା ପାହାଡ଼େ;
ଘଣ୍ଟଶିଳା ଅଭ  ନ ଦଶେ, ଲୁଚ ଲେ
ବହୁଲ ସାଳଅ ଦୁରେ ।
ଗୃହୁଁ ଗୃହୁଁ ଅସି  ଛୁଇଁଲ ଘ ନାଅ
ଗଣ୍ଡଉଡ଼ କଳାପାଣି;
ଙ୍ଗରେ ଝିଅ ଦୂଇ  ଅଖିରୁ ଲୁହ ଲେ,
ଛନ୍ତ ପିନ୍ଧା ଛୁଟକାନ ।
"ପାରକୁଦ ବୋଲି  ସାଉକ ପୁଣି ସେ
ଚଲିଲା ମଝିରେ କାହିଁ;
କେମନ୍ତେ ମୁଛିଁଲ  ଝିଅକୁ, ବାପା ହେ,
ଏତେ ଦୂରେ ଦେବାପାଇଁ ?
ବର ବୋଲି ଯାଉ  ଧରାଇଲ ହାତ
କ ଭାବ ଦେଖିଲ ଶିସ ?
ରୂପ ବିଦ୍ୟା ଅଉ  ବିଭବ, ବାପା ହେ,
ତହିଁ ଏ ତହିଁକି ବଳ ।
ମହୀମଣ୍ଡଳେ ତ  ନ ଥିବ କେ କାହିଁ
ମୋ ଭଳି ନଚେଷ୍ଟ ଜନ;
ଏ ମହାସମୁଦ୍ର  ମଝିରେ, ବାପା ହେ,
କେମନ୍ତେ ବଞ୍ଚିବ ଧନ ?
ଏତେ ଗ୍ରାମମାନ  କଣବାକୁ କେବେ
ମନରେ ଥିଲ କରୁ ର,
ଅନୁଢ଼ଶାଳେ ଟି  କପାଇଁ, ବାପା ହେ,
ଭଣ୍ଡି ଚପି ନ ମାରିଲ ?

ଝିଅକୁ ବାନ୍ଧିଲେ ଦେଇଛୁ ପଠାଇ
ବନସ୍ତକୁ ଜାଣୁ ଜାଣୁ ;
କପାଳ ଅଦର ଯାଉଛୁ, ବୋଉ ଲୋ,
ପାସୋରି ନ ଦେବୁ ମନୁ ।"

ନାଅ ଉଡ଼ିଯାଏ ପବନ ସମାନେ,
ନାହିଁ କ୍ଷଣେ ହୁଏ ଥୟ ;
ଝିଅ ବସିଅଛି ଭୁକଟି ହୋଇ ଲୋ,
ନେତ୍ରୁ ବୋହିଯାଏ ଲୁହ ।

"ନାଅ ଚାଲିଅଛି ପବନ ସମାନେ,
ନ ମାନେ ପାଣି ପଥର ;
ଭୁଲ ହୁଅ, ଜାଇ, ନ ଜାଣ ଅଉ ଲୋ,
ଏଇ ଦିଶିଲଣି ଗଡ଼ ।"

ଏତେ ବୋଲି ବାପା ଝିଅର ଅଖିରୁ
ଦେଲେ ଲୁହଧାର ପୋଛି ;
ଯେତେ ପର ଭାବୁ ବୁଝାନ୍ତି ବସି ଲୋ,
ଜାଇ ବୁଝୁ ନାହିଁ କିଛି ।

"ଭଲ କରି ନାଅ ବୁହା, ରେ ନାଉରି,
ଝିଅକୁ ମାଡ଼ୁଛି ଡର ;
ଏତେ ବେଳେ ଜାଇ ନାଅରେ ବସୁଛି
ଯିବ ବୋଲି ଶାଶୁଘର ।"

ଭଲ କର ନାଅ ବୋଲୁଛନ୍ତି ନାଉରି,
ଭଙ୍ଗି ଯାଉଅଛି କାଠ;
ଫୁଲ୍ଲ ଫୁଲ୍ଲ ବାଅ ବୋହି ଅସୁଛି ଲୋ,
ଜଣା ନ ପଡ଼ଇ ବାଟ ।

ନାଅ ଘୁରି ଥାଇ ଦଣ୍ଡକ ଭିତରେ
ମଝି ଗଙ୍ଗେ ହେଲା ଯାଇ;
ଥିର ହୋଇ ହେଲା ନାଉରି ଠିଆ ଲୋ,
କାଠ ଅଉ ପାଉ ନାହିଁ ।

ଧ୍ୱଳେଶ୍ୱର-ଶିଖରୁ ଚଲା ମେଘ ଖଣ୍ଡେ
ଉଠେଇ ଆସିଲା ତାହୁଁ;
ଲୁଚିଗଲେ ତହିଁ ସୂର୍ଯ୍ୟଦେବତା ଲୋ,
ଖିଅ ନ ପଡ଼ଇ ଆଉ ।

ମାଡ଼ି ଆସୁଅଛୁ ଅତି ବେଗେ ମେଘ
କଳିଅ-ନାସିକ ଧରି;
ବରଷା ବତାସି ଗରଜୁଅଛୁ ଲୋ,
ଦିନ ଦିଶେ ରାତ ପରି ।

ନାଅ ପଡ଼ିଅଛୁ ମଝି ଗଙ୍ଗେ ଆସି,
ବୁଡ଼ିଯିବ ହାତୀ-ଛତ;
ଟଳମଳ ହୋଇ ଟଳୁଛୁ ନାଅ ଲୋ,
ନାଉରିର ବଡ଼ ଚିନ୍ତା ।

"ଭଲ କର ବେଗେ ବୁଢ଼ା, ରେ ନାଉରି,
ନାଅ ହେଲା ଟଳମଳ;
ବରଷା ବତାସି ଗରଜ ଅସୁଛୁ,
ଜିଅକୁ ମାଡ଼ୁଛୁ ଡର ।"

ବରଷା ବଢାପି ଗରଜି ଆସିଲା,
ନାଆ ତୁହେଁ ଥୁଅ ଭରି;
ଏକା ପବନରେ ପାହାଡ଼େ ଯାଇ ଲୋ
ଫିଟି ହୋଇଗଲା ଚୂର।

*  *  *  *

ମେଘ ଚାଲିଗଲା ମେଘର ବାଟେ ସେ,
ବଢାପି ହୋଇଲା ଥିର;
ପଡ଼ିଗଲା ଖରା ନିର୍ମଳ ହୋଇ ଲୋ,
ପାଣି ହୁଏ ଝଳଝଳ।
ବାପା ପଚାରନ୍ତି ଖୋଜି ନାହରରେ,
"ଝିଅ ମୋର ଗଲା କାହିଁ ?"
ଭୁଜ ଅଙ୍ଗ ଠିଆ ନାଉରି ନିକଟେ ଲୋ,
ତୁଣ୍ଡ ତା ଫିଟଇ ନାହିଁ।
ଚିଲ୍କା ପାଣିରେ ଦୋଳୁଛି ଲହରୀ,
ବୋହୁଛି ଶୀତଳ ବାଆ,
ସୋର ସୋର ଖରା ଚଳିଯାଉଛି ଲୋ,
ଖେଳୁଛି ସହସ୍ର ନାଆ।
ପାହାଡ଼ ଚଢ଼େଇ ଉଡ଼ୁଅଛି ରବ,
ମନେ କି ଅଛି ତା ଧୋକା ?
ପାଣିତଳେ ଛାଇ ବୁଲି ଯାଉଛି ଲୋ,
ଜାଇଠି ନାହିଁଛି ଏକା।

ବାପା ଫେରି ଆସି          ବୋଉଙ୍କ ଆଗରେ
କଥା ନ ପାରନ୍ତି କହି;
ଆଉ ଦିନ ପୁଣି          ନାଉରି ଗଲା ଯେ
ନାଆ ସେହି ବାଟେ ବାହି ।

କେତେ ଶ ବରଷ          ହେଲାଣି ସେ ଦିନୁଁ
ଗଣି କି କହିବ କିଏ ?
ନାହିଁ କିଛି ଆଉ          ସେକାଳ କଥା ଯେ,
ଜାଣି ରହିଅଛି ଜୀଏ ।

ବାଲିଗାଆଁ କୂଳୁଁ          ନାଆ ଗଲାବେଳେ
ପାରିକୁଦ ଗଡ଼ଠାରୁ,
ପାହାଡ଼ ସମୀପେ          ମଣିଷ ତୁଣ୍ଡ ଯେ
ନ ଶୁଣାଯାଏ କାହାରୁ ?

ବରଷା ବିତାସି          ଶୀତକାଳରେ ଆଉ
ହୁଏ ନାହିଁ ତେଡ଼େ ଭଲ;
ଆପଦେ ବିପଦେ          ଜଣା ପଡ଼ଇ ଯେ
ସାହା କିଏ ଥିଲା ପରି ।

ନାଉରି ବାପୁଡ଼ା          ପାହାଡ଼ ବାଟେ ତା
ନାଆ ନେଇ ଗଲାବେଳେ,
କାମେ ଆପଣାର          ଶୁଭ ମନାସି ଯେ
ଜୁହାର କରଇ ଥରେ ।

ଡୋଲିଲେ ପାହାଡ଼-          ଶିଖେ କାଳେ ଭକ୍ତେ
ସୁନ୍ଦର ଦେଉଳଟିଏ;
ସେ ଦେଉଳେ ଲୁଣୀ          ସମୁଦ୍ରେ ସତେ ଯେ
ରହିବ ଦେବତା କିଏ ?

ସୂର୍ଯ୍ୟ ବୁଡ଼ିଗଲେ ନିଶବଦ ଯେବେ
ହୁଏ ସବୁ ସଞ୍ଜବେଳେ,
ଏକା ହୋଇ ଛାଇ, ଲୋକେ କହନ୍ତି ଲୋ,
ଭୁଲ୍ ଯେ ଥାଏ ପାହାଡ଼େ ।
ନେସ୍, ବୋହୁଥାଏ ଲହୁ ଦୁଇ ଧାର,
ଶୁଖିଯାଇଥାଏ ମୁହଁ;
ହେଲେ. ଠାର ହାତ, ଛାଡ଼ି, କାହାକୁ ଲୋ
ନିବର୍ତ୍ତାଇ କରେ ଅସ୍ତୁ ।

* * * *

କାଳିଜାଇ ବଡ଼ ପ୍ରତ୍ୟକ୍ଷ ଦେବତା,
କୋଟି କୋଟି ଦଣ୍ଡବତ;
ପାହାଡ଼ର ନାଆଁ ରହିଛି ଖ୍ୟାତ ଲୋ
'କାଳିଜାଇ ପରବତ' ।

## ତୃଷା

ତୃଷାରେ ଅକୁଳ ଅନ୍ଧ ଭ୍ରମେଁ ମୁଁ କାନନରେ;
ତନୁ ଭାର ଯେନ, ପାଦ ତଳେ ନାହିଁ ଚଳେ ।
ଅଧେ ଊର୍ଦ୍ଧ୍ୱେ ଚଉପାଶେ ଛୁଡ଼ା ହୁଏ ମୁହିଁ;
କାହିଁ ହେଲେ ବନ୍ଧୁ ନୀର ଦେଖି ନ ପାରଇ ।
ନ ଅସେ ଶୀତଳ ଧାରେ ବହି ସମୀରଣ,
ଶୂନ୍ୟ ଦେଶେ ନାହିଁ କାହିଁ ଉଡ଼େ ବିହଙ୍ଗମ ।
ଅନ୍ତିମେ ନିରଖେ ଆଶା-ମରୀଚିକା-ଜଳ,
ତା ପୁଣି ଖେଳଇ ନାହିଁ ଦୂର ନଭତଳ ।
କୁଣ୍ଠିତ ଚରଣେ ଗୁରୁ ପରାଣ ଓଠାଇ,
ଅତି କଷ୍ଟେ ଖଣ୍ଡେ ଦୂର ଯାଉଥାଏଁ ଚାଲି;
ପାଶେ ମୋ ପରାଣସଖା ଅକୁଳ ମଜନେ,
ପିପାସା ଦାରୁଣ ଶୁଷ୍କ କାଳିମା ବଦନେ ।
ଏସନ ସମୟେ, ମୋର ଏ ଦୁଃଖ ବିକଳେ,
ପିଲାଟିଏ ଠିଆ ତହିଁ ପାଖ ତରୁତଳେ ।
ନିମିଷକେ ପାସୋର ଯେ ଗଲି କେତେ କଥା;
ଅଧେ ଲିଭିଗଲା ମୋର ପିପାସାର ବ୍ୟଥା ।
ଲୋଭି ଯେତେବେଳ ଯାଇ ତା ପ୍ରତିମା ପାଶେ,
ପାଣି ମାଗିବାକୁ ବାଣୀ ମୁଖେ ନାହିଁ ଆସେ !
ନିରେଖି ରୂପ ମୋ ଅବା କି ବୁଝିଲା ସେହୁ;
ହାତେ ଜଳପାତ୍ର ଯେନି ଧାଇଁଗଲା ତହୁଁ ।

ମୁଁ ଯେବେ ଭ୍ରମଇଁ ଆହା କ୍ୱପାଁ ଗଲା ଗୃଳ,
ଫେରି ଆସି ମୋ ପାଇଁ ସେ ଜଳ ଦେଲା ଢାଳି ।

ଜାଣି ଧରି, 'କି କରିବି' ମନେ ଭାବୁଥାଇଁ;
'କ୍ୱପାଁ ମୁଁ ପିଇବି', ଏବେ ତଳେ ଶୋଷ ନାହିଁ ।

'ପିଅ' ବୋଲି କହିଲାରୁ ପିଇଲଇଁ ଜଳ;
ଆହା ସେ ସୁଖର ଦିନ ମୋ ପ୍ରାଣ ଦୁଃଖର ।

ତା ବଦନେ ଢଳ ଢଳ ରହୁଥାଏ ଚାହିଁ;
ପଦେ ପରାଣର କଥା ଫୁଟି ଉଠେ ନାହିଁ ।

ଢାଳ ଦେଇଥିବା ଜଳୁଁ ଶତ ଗୁଣ ବଳି,
ପିଇଲି ନୀରବ ହୃଦେ ସେ ସ୍ୱର୍ଗମାଧୁରୀ;—

ତା ବଦନେ ଦରହାସ, ତା ଅଙ୍ଗର ଠାଣି,
ଦୟା-ସ୍ନିଗ୍ଧ ତା ନୟନେ ବିମଳ ଚାହାଣି ।
ନୀରବେ ନିମେଷ ଦୁଇ ଠିଆ ହେଲି ତହିଁ,
ନୀରବ ପରାଣେ ପାଶୁଁ ଆସିଲି ପଳାଇ ।

ସଖୀଙ୍କ କହିଲି ପଥେ ଯେତେ କଥା ତାର,
ଶତଗୁଣ ଖେଳୁଥାଏ ହୃଦେ ଆପଣାର ।
ସେହି ପିଲା ସେହି ତରୁତଳେ ତହିଁ ଠିଆ;
ଏ କି ଅନ ଭାବେ ଏବେ ଉଛୁଳେ ମୋ ହିଆ !

ଏବେ ଯେବେ ଜଳେ ମୁହିଁ ତୃଷାରେ କାତର;
ସେ ପାଣି ମନ୍ଧକେ ପ୍ରାଣ କରଇଁ ଶୀତଳ ।

ଭୀଷଣ ମରୁରେ, କିବା ସିନ୍ଧୁ ସଇକତେ,
ନିମିଷକେ ଦେଖା ଦଏ ସେ ତରୁ ଗୁପତେ ।

ସେହ୍ନ ପିଲ ଜଳଧାର୍ ମୁଖେ ଦଏ ଟାଳି;
ଦରହ୍ୱାସେ ମୋ ତୃଷ୍ଣା କ୍ଷଣକେ ନିବାର ।
ସେହ୍ନ ଦନୁଁ କି ଘ୍ରବେ ବା ଭର୍ ଏ ଅନ୍ତର;
ପାଷାଣ ଶଇଳେ ଝରେ ପୀୟୂଷ ନିର୍ଝର ।

---

## ଜନ୍ମଦିନ

କୋଡ଼ିଏ ଉପରେ ପୁଣି ବରଷ ନଅଟି,
ଏ ମୋର ଜୀବନ୍ ଏବେ ଗଲା ଅଜ୍ଞ ଭାବ;
ସେ ତଥ୍ୟ ମୁଁ ନ ଜାଣିଲି କିଛି;
ଜନମ ଅଟକେ ମୋର ବାହାରିବା ସୁଖେ
ସାରିଦେଲି ତରତରେ, ମରଣ ଅଧକେ
ଅସି ଏବେ ଏ ଦୂରେ ବସିଛି ।

ଏତେଦିନେ ଜୀବନର ଭଲମନ୍ଦ କିବା ଫଳ,
ସୁଖ ଦୁଃଖ କିବା ମୋତେ କିଛି ଦିଶୁ ନାହିଁ;
କିପାଁ ଏ ଜନମ ମୋର ବୁଝି ନ ପାରଇ ।
ସେତେବେଳ କଥାମାନ ରହିଛି ସେଭଳି;
ତଳେ ହେଲେ ଏ ପରାଣ ଥାଆନ୍ତା ବଦଳି ।
ତହିଁ ବା ମାପି ମୋ ଏ ଜୀବନ ଠିକ,
ଲଭନ୍ତି ଏ ଦୁଃଖେ ଲବେ ହେଲେ ସୁଖ
ଯହିଁ ଦେଖେ କିଛି ପାଲଟ ଜୀବନେ;
ବାରେ ତାରେ ଲୋଡ଼ ନ ଥିଲି ସ୍ୱପନେ ।
ଏ କି ଅଦ୍ଧା ନିରାଶା ଅନ୍ତରେ,
ଧରନ୍ତେ ନିମିଷେ ସବୁ ଲିଭିଯାଏ କରେ ।

ଗଛ ପତ୍ରେ ଅଜ୍ଞ ନ ଦେଖଇ ଶିରୀ,
ସଲିଳ କଲ୍ଲୋଳେ ନାହିଁ କଳ କେଳି;
ପୂରୁବ ସବେଗେ ନ ବହେ ପବନ,
ପ୍ରଦୋଷ ଗଗନେ ନାହିଁ ସେ ମୋହନ;

ଫୁଲେ ବସୁ ନାହିଁ ତା ଚାହାଁ ଅଳିଟି,
ସେ କୋଇଲି ଡାଳେ ଗାଉ ନାହିଁ ଗୀତ;
ସେ ଲତା ସେ ଗଛେ ଅଙ୍ଗ ଭରା ଦେଇ,
ପ୍ରୀତି ଭୁଲି କଥା ଅଉ କହୁ ନାହିଁ;
ଯିଏ ଯହିଁ ଥିଲା ପରାଣ ଦୋସର,
ସେସବୁ ମୁଁ ତହିଁ ନ ଦେଖେ ଆବର ।
ଏ କି ମହା ନିରାଶା ଜୀବନେ,
ଦନେ ହେଲେ ଲେଉଡ଼ି କେବେ ଥାଆନ୍ତି ସ୍ୱପନେ ।

ଯିବାର ଜୀବନ ଯାହା ଗଲ୍ ତ ଗଲାଣି;
ଅଉ ଦନେ ତା ସଙ୍ଗତେ ଯିବ କପାଁ ପୁଣି ?
ଅଜ ଏ ଜନମଦନେ, ଜୀବନ ସମ୍ବଳ,
ନବଜନ୍ମ ବାଟେ ମୁଁ ପାଆନ୍ତି ଦୋସର ।
ସାଇ ପଡ଼ଶାଏ ଅସି, ଟିକି ପିଲା ପାଖେ ବସି,
ତୋଷି ହେଉଥାନ୍ତେ କେତେ,
ପିଲାଟିର ସୁଖଶିରୀ ନିରେଖି ଉପତେ ।

ଅଜଠାରୁ ହେଉ ମୋର ପୁନର୍ଜନ୍ମ ଜୀବନର,
ବାଲୁତ ବୟସେ ପୁଣି ଖେଳିବ ସୁଖେ;
ବାଲଚନ୍ଦ୍ର ଶିରୀ ଖେଳ ଯାଉଥିବ ମୁଖେ ।
ବନ ପରବତେ ଯାଇ, ଭ୍ରମିବ ସେଭଳି ମୁହିଁ,
କଣ୍ଟା ଖୁଞ୍ଚି ଗଳୁଥିବ ପାଦେ;
ଲଭେ ହେଲେ ଖେଦ ତେବେ ଥିବ ନାହିଁ ହୃଦେ ।

ପଟଣ, ଫୁଟିଲ, ନୀରେ କିବା ସମୀର-ଲହରେ
ସେ ଯେ ମିଳନ ଶୋଭା ନାହିଁ ଆଉ ତଳେ;
ସେହି କଥା ଦବାନଳି, ଝୁରି ହେଉଅଛି ବସି ।
ନୀଳ ନିରମଳ ଚନ୍ଦ୍ରମା ଗଗନେ,
ଭାନୁ ଡଇଁବାର ପାହାନ୍ତ ମୋହନେ;
ଚାହିଁ ତ ନ ଦେଖୈ ସେ ପୂରୁବ ଦିଶା,
କାହିଁ ନାହିଁ ଆଉ ସେ ସରଗ କେଳି;
ଯାଇଛି ସତେ କି ଶରଦନ ପାଇଁ,
ଏ ମୋର ମରତେ ଫେରିବ ସେ ନାହିଁ ?

ଏ ସଂସାର ଘରୁ ଯେବେ ମୋ ମେଲାଣି,
ଗୁଲିଯିବା ବେଳ ହେବ ଯେବେ ପୁଣି,
ଜନମେ ଯାହାକୁ ଦେଖିଥିଲି ସୁଖେ,
ପ୍ରାଣେ ପ୍ରାଣ ବାନ୍ଧି ରଖିଥିଲି ବୁକେ,
ତାଙ୍କୁ କି ବାରେକ ଦେଖିବି ମୁଁ ନାହିଁ,
ଯିବାବେଳ କଥାପଦକର ପାଇଁ ?
ସେ ନିଧି ସଙ୍ଗତେ ଯେବେ ଭେଟନ୍ତି ଦୋସର,
ଚିର ଶରଣରେ ଦନ ବତଯାତ୍ରା ମୋର ।
ମରଣ ଭୁଲକେ ପୁଣି
ଯେଉଁଳାଟି ଥିଲି ମୁଁ ଜନମି ।

# ନିମିଷକ ଦେଖା

ନିମିଷକ ଦେଖା ଯଦି ହେ ଏବେ ଦିଅନ୍ତ ଆସି,
ବୁକୁରେ ମୁଁ ତୋଳି ଧରନ୍ତି, ଦୂର ବିଦେଶବାସି ।
ଭୁଲି ଯେବେ ଗଲି ତୁରିତେ ଶେଷ ମେଲାଣି ଦେଇ,
ନିମିଷେ ଅନାଇଁ ରହିଲି, ଫେରି ନୟନ ବେନି ।
ଏ ଜୀବନ ଦେଖା ସେତିକି, ହେଲା ନାହିଁ ପରତେ;
ଭୁଲି ହୋଇ ବସି ରହିଲି, କି ଯେ ଭାବିଲି ଚିତ୍ତେ ।
ପଛେ ହେଲେ ବାଣୀ ବଦନୁଁ ନାହିଁ ସ୍ଫୁରିଲା ମୋର,
ମେଲାଣି ଟିକକ ଦେଇ ମୁଁ ହୋଇଥାନ୍ତି ଅନ୍ତର ।
କ୍ଷଣିକ ଲାଗି ବା ଯେବେ ହେ ଅବତରି ମରତେ,
କ୍ଷଣିକର କ୍ଷୀଣ ବନ୍ଧନ ବାନ୍ଧିଥିଲ ଜଗତେ;
କ୍ଷଣିକ ସମ୍ପଦ ବରଷେ ଯଦି ଥିଲ ବା ଫୁଟି,
ପାରିଥାନ୍ତି କିହି ଅଧିକ ଆଉ କ୍ଷଣେ କି ଏଥି ?
କେତେ ତ ଫୁଲ ତାଙ୍କୁ ନ ପଡ଼େ ଝଡ଼ି କୁସୁମବନେ,
ଏଭଳି ଫୁଲ କି ମଉଳି ଝଡ଼ି ପଡ଼ୁଛି ଦିନେ ?
କେତେ ଅବା ଆଶା ଅସୀମ କ୍ଷୁଦ୍ର ହୃଦୟେ ପୋଷି,
ଏତେ ଦୂର ଏହି ବିଦେଶେ କାହୁଁ ଥିଲ ହେ ଆସି ?

---

*ଦୂର ଗଡ଼ଜାତ ଅଞ୍ଚଳର ଜଣେ ଛାତ୍ର ସତ୍ୟବାଦୀ ବିଦ୍ୟାପୀଠରେ ଅଧ୍ୟୟନ କରିବାକୁ ଆସିଥିଲେ । ଆସିବାର ଅଳ୍ପ ଦିନ ପରେ ହଇଜାରେ ତାଙ୍କର ମୃତ୍ୟୁ ହେଲା । କବି ସେତେବେଳେ ସେଠାରେ ଶିକ୍ଷକ ଥିଲେ ।

କେତେ ବନ କେତେ ପାହାଡ଼ ଲଙ୍ଘି ବିଜନ ପଥେ,
ମିଳିଲି ଏ ନବଗ୍ରାମକେ କେତେ ହରଷ ଚିତ୍ତେ ।
ସେ ଆଶାରୁ କଣିକାଏ ବା ସେହି ହରଷୁଁ ଟିକେ
ରହି ହେଲେ ଯାଇଥାଆନ୍ତ ଗୃହଫେରିବାର ବେଳେ !
କିବା ଶୋଭାରାଶିରି ଅଧିକ ଥିଲି ଏ ବନେ ଦେଖି,
ନ ଭେଟିପାରି ଯେ ମୋହନ ଆସି ମିଳିଲି ମୁକି !
ଧନେ ହେଲେ ବୁଲିଥାଆନ୍ତ ତରୁଲତାର ମେଳେ,
ଅଙ୍ଗଶ୍ରମ ଫେଡ଼ି ଛାଇରେ ବସିଥାଆନ୍ତ ବାରେ;
ଏ ନଈ ପୋଖରୀ ସଲିଳେ ସୁଖେ ପଖାଳି ଜନ୍ତୁ,
କି ଭାବ ପବନେ ଥିଲା ହେ ପୋଛୁଥାଆନ୍ତ ମନ୍ତୁ;
ନିମିଷକ ବାନ୍ଧ ନଦେଖେ ସବୁ ଭାଙ୍ଗିଲା କାହିଁ;
ଯେତେ ଆଶା ଥିଲା ହୃଦୟେ, ଲବେ ଫୁଟିଲା ନାହିଁ !
ରେଳଷ୍ଟେଶନ ପାଖେ, ବାବୁ ହେ, ରହିଥିଲି ମୁଁ ବସି,
ଷଣ୍ଢ କ୍ଷଣେ ପୁଣି ବଦନ ଅନ ଆସିଲା ଦଶି ।
ବନ୍ଧୁଗଣ ପାଖୁଁ ନଗରେ ହୋଇଗଲେ ଅନ୍ତର,
ନେତେବେଳେ ଜଣା ପଡ଼ି ସେ ଗଲା ଅନ୍ତିମ ବେଳ ।
ମୁହିଁ ପାଖେ ବସି ରହିଲି ଏତେ ନିଠୁର ପରା,
ନିରେଖିଲି ଉଡ଼ିଯିବାର ଶେଷ ପବନଧାରା ।
ନିଜ ହାତେ ଘଟୁଁ ଭୁବନେ କରିଦେଲି ଅନ୍ତର,
ନିଜ କାଟେ ବହିନେଲି ମୁଁ କାହିଁ ବନାନ୍ତର,
ନିଜ ମୁହିଁ ଚିତା ଅନଳ ଦେଲି ଯତନେ ଜାଳି,
ସେଥିରୁ ଧୂମ କଳା ଚିତାରେ ଦହେ ଥାଆନ୍ତା କାଳି ।

ବନ୍ଧୁଗଣମେଳେ, ବାବୁ ହେ, ଖେଳ ମଉଜେ ବନ୍ଧୁ;
ଫେରିଲ ଯା, ପ୍ରାଣପ୍ରତିମା ତାହିଁ ବିସର୍ଜିଦେଇ ।
ସେ ସକଳ କଥା ଏବେ ମୁଁ ନିତ ହେଉଛୁ ଭୁଲି;
ଅଉ ଘଟଣ ହେଲେ ତୁମର ସେବା ଆଥାନ୍ତୁ କର ।
ପିକ ଡାଳୁଡାଳେ ଗାଇଲେ, ନଭେ ଉଇଁଲେ ଶଶୀ,
ପଦ୍ମବଗହଳରୁ ଅନାଇଁ ଫୁଲ ଫୁଟିଲେ ହସି,
ପିଲାମାନେ ମିଳି ସଙ୍ଗେ ଖେଳି ବୁଲିବା ବେଳେ,
ତୁମ ସେ ଅନ୍ତିମ ମୂରତି ଆସି ଭଲେ ମୋ ଡୋଳେ ।
ଏ ସକଳେ ତୁମେ, ବାବୁ ହେ, ଦଲେ ଅଜ ବହାର,
କେତେମନ୍ତେ ସୁଖ ସମ୍ପଦ ବନ୍ଧୁ ନ ଥାନ୍ତା ତାର ।
ନିଶୀଥ ଅନ୍ଧାରେ ଶଯ୍ୟେ ଯେବେ ଅସର ନିଶି,
ତୁମ ଆକେଶ ପାଖେ ଯାଏ ମୁଁ ରହେଁ ମଉଜେ ବସି ।
କି ଦୂର ଅଜଣା ରାଇଜେ, ବାବୁ, ରହିଲ ଯାଇ;
ନିମିଷକ ଦେଖା ବାହୁଡ଼ି ଆଉ ଦେଲ ନାହିଁ ।

# ଭିକ୍ଷା

ଭୋକେ ତା ଜଳୁଛି ପେଟ; ବୁଲୁଛି ଭିଖାରି,
ଶତଛିନ୍ନା ଖଣ୍ଡିକେ ସେ ମେଶଲ ଆବରି ।
ବେନି ନେତ୍ରୁ ଝରୁଅଛି ବେଗେ ଅଶ୍ରୁଧାର;
କପାଳେ କୁଞ୍ଚିତ ମହା ସନ୍ତାପର ଭାର ।
କହୁଛି ଭିଖାରି, "ହାତେ ଦେବ କେ ମୁଠିଏ,
ଦୁଇ ଦିନେ ଚୁଲି ମୋର ଜଳିନି ଓଳିଏ ।"
ଦୁଇ ଦିନେ ଓଳିଟାଏ ଦାନା ଖୋଜିବାକୁ
କିଏ ଜାଣେ ହରିଙ୍କର ବରଦ କାହାକୁ ।
ଗ୍ରାମମଧ୍ୟେ ଧନୀଜନ କୁବେର ଉଆସ,
ସାକ୍ଷାତ ଲକ୍ଷ୍ମୀ ସେ ତହିଁ କରିଛନ୍ତି ବାସ;
ଐଶ୍ୱର୍ଯ୍ୟ ସମ୍ପଦେ ପୁଷ୍ଟ ପଡ଼ୁଛି ଉଛୁଳି,
ହୀରା, ନୀଳା, ମୋତି, ମଣି ହେବ ନାହିଁ କଳି ।
ସୁବର୍ଣ୍ଣ ଫଳକେ ତହିଁ ମାଣିକ୍ୟ ଅକ୍ଷରେ
ଲେଖାଅଛି, "ଆସ ଯେତେ ଦୀନ ଦୁଃଖୀ ନରେ !
ହିତକ ବଣ୍ଟାଇ ଏଥି ଅତୁଳ ସମ୍ପଦେ
ଧନରତ୍ନ ଘେନି ପୁଣି ବାହୁଡ଼ବ ମୁଦେ ।"
ମୁହୂର୍ତ୍ତିକେ ଆଖି ତହିଁ ପକାଇ ଭିଖାରି
ଭିକ୍ଷା ମାଗି ମାଗି ବାଟେ ଗଲା ତାର ଚାଲି ।
ଗାଆଁ ମୁଣ୍ଡେ ଦରିଦ୍ର ସେ ଅରକ୍ଷିତ ଏକ
ଅଧପେଟେ ହେବା ଭଳି ଆଣିଥିଲା ଭିକ ।

ଡାକିଲା, "ଆସ, ରେ ଭାଇ, ତୁହ ତୁ ଅପେୟ୍ୟ;
ଖାଇବା ରେ ଏ ମୁଠିକ ବାଣ୍ଟି ଆଜ ଦହେଁ ।"
ବେଳ ଜଣେ ବଣ୍ଟାବଣ୍ଟି ହୋଇ ସେ ମୁଠିକ
ଖାଇଲେ, ନିବାର ପେଟ୍ଟ ଅଧାଅଧି ଭୋକ;
ଶୋଇଲେ ସେ ଗଛଛାଇତଳ ଆଶ୍ରା କରି,
ଆର ଦିନ ଗଲେ ପୁଣି କାର୍ଯ୍ୟ ଅନୁସରି ।

---

# ବିଧବା

କିଏ କହେ, ବିଧବା ଗୋ, ଚିର ଦୁଃଖୀ ହୋଇ
ଏ ବିଶ୍ୱ ସମ୍ପଦ ମଧ୍ୟେ ଅଛ ତୁମେ ରହି;
ହରାଇ ଦେଇଛ ଯାହା ପରାଣର ଧନ,
ପଥ ଭିଖାରିଣୀ ଦୁଃଖେ ଯାପୁଛ ଜୀବନ ?
ଏ ଜଗତେ ବିଶ୍ୱଶିଳ୍ପ ଅଛି କେତେ ପୂରି
ଅବନୀ ଗଗନେ, ହେବ କଳନା କି କରି ?
ଏ ଶିଳ୍ପ ସକଳ ଦୃଷ୍ଟି ଜିଣି ଅବହେଳେ,
ତୁମ ନାଥ, ବିଧବା ଗୋ, ହରିଲେ ଭୂତଳେ ।
ହରାଇ ଦେଇଛ ସତ ପରାଣର ଧନ,
ମରତ ସମ୍ଭୋଗେ ଦିନେ ନୋହିଲ ଭାଜନ ।
ଏ ଯେ କିନ୍ତୁ ବସୁଧାର ଭରତେ ଅନାଇଁ,
ଜପିବାର ସେ ମନ୍ତ୍ରର ହୃଦପୀଠେ ବହି;
ଏ ଯେଉଁ ସାଧନା ନୀତ କଠିଣ ତ୍ୟାଗ,
ରଖିବା ପରାଣେ ଜାଳି ପ୍ରୀତି-ପୂତ ଯାଗ;—
କି ଅଛି ଜଗତେ ଯାର ହେବ ସରିସମ ?
ଏ ଦାନ ଦଇନେ ତୁମେ ନିଦବଂଭୂଷଣୀ ।
ହାଲୁଥାଅ, ବିଧବା ହେ, ଚାଲୁଥାଅ ପ୍ରୀତି;
ଅନନ୍ତ ଏ ବ୍ରତେ ଜନ୍ମ ଯାଉ ତବ ବିତି ।

---

# ଯୁଗଳ

ପାଞ୍ଚ ବରଷ ତା        ପୂରିଛି କି ନାହିଁ,
ଫୁଲଟିକେ ଯାଉଛି ଚାଲି;
ହସହସେ ମୁଖ        ଫାଟି ପଡ଼ୁଅଛି,
ଅମୃତ ବାରିଧି ଢାଳି ।
ଭଲ କରି ଶିଖି        ନାହିଁ ଚାଲିବାର,
ଟଳି ସେ ପିଅର-କୋଳେ;
ଉଦାସେ ପିଲଟି        ଯାଏ କାହିଁ ଏକା
ମନ ଅନୁରାଗ ଭୋଳେ ?
ସାଙ୍ଗ ସାଥୀ କାହିଁ        କାହାନ୍ତି ସଙ୍ଗତେ,
ନାହିଁ ଜଗୁଆଳ ଜନ;
ଏକା ସେ କଉଳି        ଦେଇଛନ୍ତି ଛାଡ଼
ପରାଣଦୁର୍ଲ୍ଲଭ ଧନ ?
ଚାଲି ଚାଲି ପଥେ        କୋମଳ ପୟରେ,
ପଲକେ ଶରମଭରେ,
ପାଦେ ପାଦ ବାନ୍ଧି,        ପିଲଟି ଅଧା ସେ
ପଡ଼ଇଲା ଭୂଇଁତଳେ ।
ଖଣ୍ଡିଦୂରେ ତହିଁ        ଖେଳୁଥିଲେ ସୁଖେ
ହସ କଉତୁକେ ମାତି,
ବାଳକ ବାଳିକା        ସମ ବୟସର,
ବଦନ ସମ୍ପଦେ ଖ୍ୟାତ ।

ବରଷ ପାଞ୍ଚ ତା ମୃଦୁ ଅପଘନେ
ପୁବଛୁ କି ଅବା ନାହିଁ,
ନିରେଖି ନିମିଷେ ଅସିଲ ବାଳିକା,
ଜନକ ଚରଣେ ଧାଇଁ ।

ମୃଦୁଳ ପରଶେ ଘେନି ବାହୁ ଯୁଗ,
ସରଣୀ ଶେଯ୍ୟଁ ତା ତୋଳି,
ସୋହାଗେ ବାଳିକା ନେଲା ଅଳିଙ୍ଗନେ,
'ଅହା ମୋ କୁନିଠି' ବୋଲି ।

ଅପଣାର ଠିକି ବସନ ଅଞ୍ଚଳେ
ଧୂଳି ଅଙ୍ଗୁ ଝାଡ଼ି ତାର,
'ତୁନି ହୁଅ' କହି, ପୋଛିଲା ଯତନେ
ନୟନ-ଲୋତକଧାର ।

ମଜନେ ପିଲଟି ଉଠି ଭୁଇଁ ତଳୁ
ଉଦାସେ ହୋଇଲା ଠିଅ;
ଅଙ୍ଗ ପୀଡ଼ା ଶିଶୁ ସରମ ବସୋର,
ଅଧରେ ଫୁଟେ କି ହୃଅ ।

ବାଳକ ବାଳିକା ଯୁଗଳ ଚନ୍ଦ୍ର ସେ
ଏକଇ ପର୍‌ଣେ ଡଳି,
ସାଇପିଲ ମେଳେ ଖେଳିଲେ ଉପଟେ
ସୁର ପାରିଜାତ ବଳି ।

---

## ବିହଗ ପରାଣ ବେଦନା

"ଦେଖୁଛ ତ ଦୂରେ          କନକ ନଗରୀ
    ମାଣିକ୍ୟ ଭୂଷଣେ ଭରା;
'ଅ ଅ ଅ ଅ, ପିଉ'—          ଶୁଣୁଅଛୁ ନିତ
    ସୋହାଗ ବଚନଧାରା ।

ଗୁଳି କ ଛୁ ସତେ          ପିଉ, ରେ କୋଇଲି,
    ଏ ବନ-ଉଦ୍ୟାନ ଛାଡ଼ି;
ଏ ତରୁତାଙ୍କୁଁ ତୋ          ନ ଭାଳିବୁ ଆଉ
    ଅମୃତ ଅଲକ୍ଷ୍ୟ ଶିରୀ ?

ମଣୁ କି ମରତେ          ଯାବତ ସମ୍ପଦ
    ମୋର ଏ ଏକଇ ତରୁ,
ତେଜି ଏ ଗହଳ          ଜଡ଼ିଗଲେ ବାରେ
    ଭେଟିବୁ ଭୀଷଣ ମରୁ ?

ବହୁଛୁ, ଦେଖ ରେ,          ଫୁଲ ଫଳ କେତେ
    ମଧୁ କିଶଳୟ ଡାଳେ,
ବହୁଛୁ ଯା ବନେ          ସ୍ତବ ତରୁଲତା
    ସେନେହ ସୋହାଗ ଭରେ ।

ରଙ୍ଗିଛୁ ତୋପାଇଁ          ଲତିକା ନିକୁଞ୍ଜ
    ସଜାଇ ମୋହନ ବେଶେ,
ନିଶି-ଶଶିସ୍ନାତ          ପୀୟୂଷେ ପଖାଳି,
    ଅରୁଣ-କନକ-ଭାସେ ।

ବହୁଛି ସମୀର, ମୃଦୁ ଅବନୀରେ
ଖେଳାଇ କାନନଭୂମି;
ଦେଶେ ଦେଶେ ମଧୁ ହାରଇ ଯାଉଛି,
କୁସୁମ କେଶର ଘେନି ।

ଚକୋର ଯେ ମୋଦେ ନାଚ ବଲ୍ଲଭ
ଅପର ବିହଗ କେତେ,
ଶୁଆ, ଶାରୀ, ପିକ ଆସିବେ ଏ ଠାରେ
ବନେ ବନେ ଛନ୍ତି ଯେତେ ।

ଦୂର ମନ୍ଦାକିନୀ ପେଷିବ ନିଜର
ସଲିଳ ବିମଳ ଧାରା;
ହିମାଚଳ-ଶିରୁଁ ହିମ ଶୁଭ୍ର ଚୂଳ
ଓହ୍ଲାଇ ଆସିବ ପରା ।

ମହୋଦଧି-ବକ୍ଷ ଫେନିଲ ଲହରୀ
ଖେଳିବ ଏ ବନେ ଆସି;
କୁମୁଦ କହ୍ଲାର ସ୍ରୋତର ସୋହାଗେ
ସୁଖେ ବିହ୍ବଳିବେ ହସି ।

ଏ ତହୁଁ ବଳି କି ଅଛଇ ସମ୍ପଦ
କନକ ରଜତ ବାସେ,
ଯାହା ଲାଗି, ପିକ, ଆକୁଳ ହୃଦେ ତୁ
ବଞ୍ଚିତ ହିରୁ ଯେ ଦେଶେ ?
ରହ ଏଥି ରହ ବନର କୋଇଲି,
ଭୁଲିଲେ ପରାଣୀ ଭାବ;

ଏ ସରସମାନେ  ଅବନୀ ଅଙ୍କାରେ
  କିବା ତୁ ଲଭନ୍ତି କାହିଁ ?"

"ଯାଇ ନାହିଁ, ଯେବେ  ଯିବାର ଥିଲା ମୋ
  ମୁକତି ମୋହନ ପଥ;
ଏ ତରୁ ଶାଖାଟି  ଲେଉଡ଼ ତ ଆସିଲୁ
  ମୁଁ ଦୂର ଅପରିଚିତ ।

ହାତେ ଧରି ଯେବେ  ସୁବର୍ଣ୍ଣ ପିଞ୍ଜର
  ନୃପତି-ତନୟମଣି
ଆଣିଲେ ଆଦରେ,  ଏଣୁ ସେ ସୋହାଗ,
  ଆଶ୍ରିଲୁ ଏ ବନଭୂମି ।

ଏ ତରୁଟି ବନେ  ନ ଜାଣେଁ ଅନ ମୁଁ,
  ନିବସି ନିରତେ ଏଥି;
ମନ୍ଦରୁ ମନ୍ଦ ଯେ  ହେଉ ବନଦେଶ,
  ବୈକୁଣ୍ଠୁ ବିକଟ ଅତି ।

ନ ବହୁ ସମୀର,  ଗୁଣୁ ଗୁଣୁ ଅଳି
  ବସୋନ୍ତୁ ଗୁଞ୍ଜିବା ତାର;
ରବି, ଶଶୀ, ତାରା  ଲୁଚନ୍ତୁ ଗଗନେ,
  କି ତହିଁ ଅଛଇ ମୋର ?

ଏ ତରୁ ଶାଖାଟି  ମୋ ବିଶ୍ୱସାରା ହେ,
  ମୋ ଜୀବ ଜୀବନ୍ତ-ନିଧି;
ଯେତେ ଦିନ ଏଥି  ଗାଉଥିବି ବସି,
  ମୋ ଲକ୍ଷ୍ୟ ପାରିବି ସାଧି ।

ସହିବ ବରଷା.　　　　ପବନ-ପ୍ରବାହ,
　　ତପନ-ତପତ-ତେଜ;
ଧରି ଏ ଜୀବନେ　　　　ନେଇଛୁ ବାଟେରକ,
　　ଛାଡନ୍ତୁଁ ବଳି କି ନିଜ ?
ଡାଳୁଁ ଡାଳେ ଉଡ଼ି,　　　　ପଲ୍ଲବ ଗହଳେ
　　କୋଇଲି ଉଷତ ମୈନା;
କନକ ଭୂଷଣେ　　　　କିବା ଅଛୁ ତାର
　　ବିହଗ-ପରାଣି ଘେନା ?"

---

# ନିଦାଘ ସରସୀ

ଶୁଖିଛି ମୋ ସାର୍ ସୁନୀଳ ଜଳଧି,
ଅତଳେ ହୋଇଛି ଲୀନ;
ବିଲ୍ ପଦ୍ମ ମାଳେ ମିଶି ସେ ମୋ ତନୁ
ଅଙ୍ଗ ଆଭା କେଡ଼େ ହୀନ !

ଜଳ-ଦରପଣେ ମୁକ୍ତା ପ୍ରତିଫଳେ
ସମୀରେ ଖେଳାଇ ଶିର,
ରକ୍ତ-ହେମଛର- ଅଲକ୍ଷ୍ୟ-ପରଶେ
ବସୋର ଜୀବନ ଭାର,
କମଳ-କଳିଟି ବିକଶି ଯେ ଥିଲା
ଅବନୀ ଗଗନ ମୋହି,
ଜୀବନ-ପ୍ରଭାତେ ଚିତା-ତଳେ ସେ ତା
ମଉନେ ପଡ଼ିଛି ଶୋଇ ।

ବାଟର ବାଟୋଇ ବାଟେ ଚାଲିଯାଏ
ଉଦାସ ଚରଣେ ଆଜି;
ନିମିଷେ କି ଚିତ୍ତେ ଭୁଲେ ମୋ ବିଗତ
ସୋହାଗ-ସମ୍ପଦରାଜି ?

କି ଅଛି ମୋର ଯେ ପଖାଳିଦେବ ତା
ଧୂଳି-ବିଲେପିତ ପାଦ;
ମୋ ସୁଧା-କଣିକା ଅରପି ହରିବ
ମନୁଁ ମନ-ଅବସାଦ ?

ନିଶି-ଶଶିସ୍ମିତେ ହସନ୍ତେ ଯା କୋଳେ
ଚନ୍ଦନ ରଜତ ହାସେ

କୋଟି ଭଙ୍ଗି କଳି,  ତା ତନୁ ପୂରଛୁ
ବନ କଣ୍ଟା ବୁଦା ଘାସେ ।
ଯେତେ ମୋ ସମ୍ପଦ  ସଞ୍ଚିଛୁ ସକଳ,
ଋତୁ ଆବର୍ତ୍ତନେ ଭୁଲି;
ଦୀନହୀନ ବେଶେ  ଦିବା ନିଶି ନିତ
ପଡ଼ି ମୁଁ ହେଉଛୁ ଘାର ।
ଜଳବେଣୀ-ବକ୍ଷେ  ଯନ୍ତ୍ରରନ୍ଧ୍ରେ ସୁଖେ
ଖେଳେ ଜଳଚର ଯହିଁ,
ଶୃଗାଳ କୁକୁର  ବିକଟ ନିନାଦେ
ବୁଲନ୍ତି ଖୁଆଡ଼ି ହୋଇ ।
ଆଜି କିପାଁ ନଭେ,  ନବୀନ ଜଳଦ,
ଢାଳୁଛ ସଲିଳଧାର;
ନିଠୁର୍ ସେନେହେ  ଢାଳୁଛ ମିଛେ,
ଏ ତନୁ-ତାପିତ-ଭାର ?
ଅଧେ ମୁଁ ଜଳିଛୁ  ଯେ ଗ୍ରୀଷ୍ମ ଆତପେ,
ପୁରାଇ ଜାଳିବ ତହିଁ;
ଘନ ବାରିଧାର,  ତଟିନୀ-ପ୍ରବାହେ
ଆଜି ତ ଭୁଲିବ ନାହିଁ ।
ଗିରିଶିଳା-ଶିରେ  ବରଷ ହରଷେ,
ସାଗର-ସିକତା-ଶେଯେ,
ମୋ ଭଳି ସହସ୍ର  ନିରେଖି ଅଛିତେ
ବୁଡ଼ାଇ ବିଷାଦ-ନଳେ ।

---

## କାଶୀ ଯିବ ?

"କାଶୀ ଯିବ ? ସେ ତ ବହୁ ଦୂର ପଥ,
ନଦୀ ଗିରି ବନ ବିଷମ ପାରେ;
ଏ କ୍ଷୀଣ ଚରଣେ କିପରି, ଗୋ ବୁଢ଼ି !
ଚାଲି ଯିବ, ମନେ ଧାଇଁଛ କେଉଁ ବଳେ ?"

"ଘର ମୋର, ବାବୁ, ପ୍ରୟାଗ ଘାଟେ,
ମିଳନ୍ତି ଜାହ୍ନବୀ ଯମୁନା ଯହିଁ;
ଏକାକି ଦୁଃଖୀ ମୁଁ ରହେ ମୋ କୁଟୀରେ,
ପୁଅ ପତି ମୋର କେହିଟି ନାହିଁ ।

ପୁଅ ପତି ? ପତି ପରାଣଦେବତା
ବର୍ଷବ୍ୟାପୀ ବ୍ୟାଧି ଭୋଗିଲେ ଅହା !
କି କହିବି, ବାବୁ, ସେ ଦୁଃଖ କଷଣ,
ମରଣ-ଶେଯେ ସେ କେ ଥିଲେ ସାହା ?

ପରାଣୁ ଅଧିକ କରିଥିଲେ ମୋତେ
ସମାଦର କମିତେ ପାରିଲି ନାହିଁ;
ଏହି ହାତେ ଘରୁ କାଢ଼ି ମୁଁ ଅନ୍ତର,
ଚିତାନଳେ ତାଙ୍କୁ ଥାପିଲି ନେଇ ।

ପଶି ମୁଁ ଥାଆନ୍ତି ନିଜେ ସେ ଅନଳେ;
ଚିତା-ତଳେ ଶୋଇ ପତିଙ୍କ ତୁଳେ,

ନର ପ୍ରୀତି ପାଶେ ଏ ମର ବନ୍ଧନ
କରିଥାନ୍ତି ଚିର ସରଗପୁରେ ।

ନୋହିଲି ନୋହିଲି, ଶିଶୁ ତନୟର
ବାଲୁତ-ଉଦାସ ବଦନ ହେରି,
ଅଧେ ଜୀବ ମାତ୍ର ବନ୍ଧୁ ଏ ହୃଦୟେ,
ଲୁଠିଲେ ଅବର ଅସିଲ ଫେରି ।

ପରାଣପତିଙ୍କ ପ୍ରୀତି-ପ୍ରତିନିଧି
ମୁରୁଟିରେ ମୋର ଦେଖିନ ମୁଁ କୋଳେ,
ରମଣୀ ବିଚ୍ଛେଦ ଭାରି ଭେଜ ମନ୍ତ୍ର,
ଶୋକ-ସ୍ମୃତିଟିକି ପୋଛିଲି ଧୀରେ ।

ମୁରୁଟିକି ହେଲି ଅଠର ବରଷ,
ଉପମା ଅବନୀମଣ୍ଡଳେ କାହିଁ ?
ଯେତେ ଦେଖିଲେ ମୋ ନ ପୂରେ ପିପାସା—
'ଧନ, ଏ ଜୀବନ ତୋହର ପାଇଁ ।'

କେତେ ଦିନେ ଦେଶେ ବଇରି ସଇନେ
ଅସିଲେ ରାଇଜ ଜିଣିବା ଆଶେ;
ମନେ ପଡ଼ିଗଲେ ରୋମାଞ୍ଚ ହେଉଛି,
ଏ ଜରି ପଚାଶ କମ୍ପୁଛି ତାସେ ।

ବାଲି ଧୂଳି ମାଟି ପଙ୍କେ ସିନା ଗଢ଼ା,
ସରଗୁଁ ବଡ଼ ଏ ଜନମଭୂଇଁ;
କପଟ ଦେଖିବ ହଳଟେନ ବ ପର,
ଏ ପିଣ୍ଡେ, ବାବୁ ରେ, ପରାଣ ଥାଇ ?

ମୋ ଦୁଃଖୀ ହୃଦର          ଅମୂଲ୍ୟ ରତନ
ମୁଅଁଟିରେ ତନ୍ତୁଁ ଲାଗିଲ ପାଶେ;
କରଯୁଗେ ଘେନି          ଚୁମ୍ବିଲି ବଦନ,
ଭାସିଲି ଅଧା କି ନେତ୍ରର ଭାଷେ,—

'ବୟସ ସହିତେ          ଚୋର ଏ ସଂସାରେ
କେତେ ଅନାଥର କାନ୍ଦନ୍ତି ଆଖି;
ନ ମିତ୍ର, ଧନ, କି          ଗଉରବେ ରଖେ,
ରଘୁକୁଳ ନାହିଁ ଅଯତ୍ର ନାଶି ?'

'ଯାଉଛି, ମାଆ ଲୋ,          କର ଆଶୀର୍ବାଦ,
ବରଷ ସହନ ଜଣିବା ପାଇଁ;'
ହାତେ ଧନୁଃଶର          ଢାଲ ତରବାର
ଦେଇ, ଛାତିରେ ଲୁହ ପୋଷିଲ ମୁହିଁ ।

ସେହୁ ବେଶଟି ଯେ          ମୋ ଧନମାଳୀର
ଦେଖି ମୁଁ ନୟନେ ଦେଲି ମେଲାଣି;
ଆଉ ଏ ଜୀବନେ          ଶୟନେ ସ୍ବପନେ
ସେ ବଦନ ନାହିଁ ଦେଖିଲି ପୁଣି ।

ସେହୁ ଦିନୁଁ, ବାବୁ,          ଡେଙ୍ଗୁଛି କୁଟୀର,
ବୁଲୁଛି ସାଇକୁ ସାଇରେ ଯାଇ;
କେତେ ତ ଦେଖୁଛି          ଯୁବା, ଜରାଜୀର୍ଣ୍ଣ,
ମୋ ପୁଅ ପରିକି ଭେଟିଲି କାହିଁ ?

ସାକ୍ଷୀ ଏ ଅଛନ୍ତି          ସାକ୍ଷୀ-ଗୋପୀନାଥ,
ବତାଇ, ବାବୁ ରେ, ଦିଅ ମୋ ବାଟ;

ଖୋଜିଲଣି ଯେତେ, ଖୋଜିବ ଅତୁର,
ଜୀବନେ ଯାବତ ନୋହୁଛୁ ଭେଟ ।

ତୋହ ଭଳି ଯେତେ ଦେଖିବ ଯେ ଠାବେ,
ବଖାଣିବ ମୋର ହୃଦୟ ଜ୍ୱାଳା;
ଏ ଦୀର୍ଘ ନିଶ୍ୱାସ ସହି ଦହୁ ଦିନ,
ଅଧିକୁ ଅଧିକ କରିବ ଜ୍ୱାଳ ।”

“ଚାଲ, ମା, ସଙ୍ଗରେ ଯିବ ମୁହିଁ ତୋର,
କାଶୀ କପିଳାସେ ବୁଲିବ ଯାଇ;
ଯେ ଭାର ବହୁଛୁ ଏକା ତୁ ପରାଣେ,
ଅଧେ ତହୁଁ ଏବେ ବହିଲି ମୁହିଁ ।

ବେନି ଜନେ ଏବେ ଏକାଠି ପିନା ତୁ
ଖୋଜୁଛୁ ବୋଲି ଏ ବିଷମ ଜ୍ୱାଳା;
ବେନି ଜନେ ଯେବେ ଖୋଜିବା ଜଣିକୁ,
ସୁଖେ ବହିବା ଏ ବିଷାଦ-ଭାର ।”

“କହ ନା, ବାବୁ ରେ, କହ ନା ଏଭଳି,
ଥାନ କି ଅଛଇ ଏ ହୃଦ-କୋଣେ,
ଅଉ ଏକ ସ୍ମୃତି ସମ ସୁଖ ଦୁଃଖେ
ପରାଣେ ବହିବା ପାଇଁକି ଦିନେ ?

ଯେତେ ମୁଁ ଜୀବନେ କରିଛୁ ସେନେହ,
ପୋଛୁ ଯେ ଜୀବନ୍ତି ଦେଉଛୁ ସବୁ;
ମନେ ତ ନୋହୁଛି କେତେ ମୁଁ ରେ, ଅଜ
କିପାଁ ତୁ ଏ କଥା କହିଲୁ, ବାବୁ !

ଉଇଁବ ତୁରତେ ନଭେ ଦିନମଣି,
ଢାଳିବ ଅନଳ୍ପ ବଳ ତପତ;
ଜଳ ମୁଁ ଶୁଖିବି, ଉତ୍ତପ୍ତ ବାଟ,
ବାଛ ଭୋ, ବାବୁ ରେ, ରହ ତୁ ଏଥି ।"

---

# ପ୍ରତ୍ୟାଖ୍ୟାନ

ଏକାଠି କରି ମୁଁ ଫୁଟି ସରୋବରରେ
ଯାପିଲି ଯାମିନୀ ସାରା;
ଉଷା ରବିକରେ ମୁଦିଲି ନୟନ
ବିସୋରି ଜୀବନଧାରା ।

ତପନ-ପାବକେ ଯାଇଥିଲି ଜଳି
ପରଶ-ସୋହାଗ ତେଜି,
ବାସନା-ଶ୍ମଶାନେ ସଜାଡ଼ି ଉଦାସେ
ପାଖୁଡ଼ା କେଶରରାଜି ।

ଫୁଟିଲି ପୁଲକେ କମଳ-କଳିକା,
ଟଳିଲି ସରସୀ-ନୀରେ,
ସମୀର-ହିଲ୍ଲୋଳେ ଖେଳିଲି ସରାଗେ;
ଦେଖିଲେ ସୁମନେ ତୀରେ ।

ମୁହିଁ ସେତେବେଳେ ଲୋଡ଼ି ତ ନ ଥିଲି,
ଉଠିବ ମୋ ନିଦ୍ରା ଭାଙ୍ଗି;
ଭାବି ତ ନ ଥିଲି, ମୋରେ କେ ଚାହିଁଛି,
ମୁହିଁ ଅବା କାହା ଲାଗି ।

ତୁମେ କିପାଁ ଏବେ ଉଠାଇଲ, ବନ୍ଧୁ,
ଦୂର ଅନ୍ତରୀକ୍ଷ ତାର;
ମରଣେ ଢାଳିଲ ପ୍ରୀତି ପରଦାନେ
ଅମର ପୀୟୂଷଧାରା ?

ବିଜନେ ଥିଲି ମୁଁ ବିପିନ-ନିବାସୀ,
କଲି ବିଜନତା ଦୂର;
ସହସ୍ର ଯୋଜନେ ରହି, କଲି ଏଥି
ହୃଦକନ୍ଦ-ହ୍ରଦ ପୂର ।

ମରତେ ଜନମ, ମରତେ ବାସ ମୋ,
ମୋ ସ୍ୱର୍ଗ ମରତ ଶିରୀ;
ଜୀବନ ମରତ ସୁଖେ ସିନା ପାରେ
ଏ ମର୍ତ୍ତ୍ୟ ଦେହୀ ଟାଳି ।

ସମୀର ପରଶେ ଖେଳିବ, ସଲିଳେ
ଦେଖିବ ବଦନ ଠାଣି,
ତୀର ଫୁଲ ଛୁଟିଲେ କୁହାକୁହି ହେବ
ହୃଦୟ ଗୁପତ ବାଣୀ ।

ଏହା ସିନା, ପ୍ରୀତି ପରଶମଣି ହେ,
ଲୋଡ଼ଇ କଣ୍ଠି ପ୍ରାଣେ;
ନିମିଷକ ଦୂରେ ରହି କି ପାରିବ
ସୁର ସ୍ନେହ ସନମାନେ ?

ଏହି କଥାମାନ ପ୍ରାଣେ ଯେବେ ମୋ
ହେଲା ନାହିଁ ଲଭିବାର,
କି ସୁଖ, ପ୍ରିୟ ହେ, ନିମିଷେ ଜଳୁଛ
ବହି ଏ ଜୀବନଭାର ?

ପ୍ରାଚୀ ଗଗନ ଦିଶିଲାଣି ତୋରା,
ଅରୁଣ କନକ ଢାଳି;

ମୁଁ ଏବେ ଢୁଳିଲେ ମୁଦିବି ନୟନ,-
ଅଧରେ ଏ ଉନ୍ତୁ ଜାଳି ।
ନାହିଁ, ନିଶାମଣି, ଉଠାଇବ ଆଉ
ଏ ଦୀର୍ଘ ଦିବସ ପାରେ;
ଦୂର ବ୍ୟୋମବାସି, ବ୍ୟୋମବାସେ ରହ,-
ମୁଁ ବୁଡ଼େଁ ସରସୀ-ନୀରେ ।

---

# ଏକାକୀ ଅଳି

ତରୁଲତା ଅଗଣିତ କାନନ ବିତାନେ,
ଶ୍ୟାମଳ ସମ୍ପଦେ ତନୁ ମଣ୍ଡି ସ୍ୱଯତନେ ।

ମୃଦୁଳ ପରଶେ ଯେବେ ବହଇ ସମୀର,
ଶ୍ୟାମ ଅଙ୍ଗେ ଖେଳିଯାଏ ତରଙ୍ଗ ରୁଚିର ।

ସେ ଖେଳେ ଏକାଠି ଧୀରେ ଯାଉଥାଏ ଭାସି,
ସରସେ ଅଳିଟି କାହିଁ ନ ପଡ଼ଇ ବସି ।

ପତ୍ର ସନସନେ ମିଶି, ପିକ କଳତାନେ,
ଅଳିର ଗୁଞ୍ଜନ ଯାଏ ମିଶି ଉପବନେ ।

କେତେ କାଳେ ପତ୍ର ଘନ ଗହଳରୁ ଉଠି,
କଣଳସ୍ତୂ ବିକଶିଲ ଫୁଲଟିଏ ଫୁଟି ।

କାନନର ସକଳ ସେ ଶ୍ୟାମଳ ପରିବେଶ
ଏକାକୀ ପାଟଳ ଶିରୀ ହସଇ ମଉନେ ।

ସମ୍ଭାର ସମ୍ପଦ ତାର, କାନନ ଅନିଳ
ତା ତନୁ ପରଶ ପାଇଁ କରେ ଅଣି ଠୁଳ ।

ତଥିପରେ ଧୀରେ ଧୀରେ ମଧୁ ଖେଳେ ନାଚି,
ମଧୁଧାର ଦେଉଥାଏ କାନନେ ବିରଚି ।

ମଳୟ ହିଲ୍ଲୋଳେ ଭାସି ନବ ସଉରଭ
ଉପବନେ ଢାଳେ କୋଟି କନକ ବିଭବ ।

ଡାଳୁ ଡାଳେ ଉଡ଼ି ବୁଲେ ଏକାକୀ ଅଳିଟି,
କାନନ ସମ୍ପଦେ ଦେଇ ନିଜ ଗୁଞ୍ଜ ଗୀତ ।

ସୁମନ ସୁରଭି ଧାରେ ଖେଳି ଖେଳି ଯାଏ,
କାହୁଁ ଯେ ଅସଇ ଭାସି ସଙ୍କୋଚେ ଅନାଏ ।

ଦୂରୁ ନିରେଖଇ ତାର ମୋହନ ମୂରତି,
କଶଳସ୍ଥେ କି ସୁଖେ ସେ ଦୋଳୁଛି ଫୁଲଟି ।

ବିଧାତା ବିଧାନ ଭବେ ଏଡ଼େ ହୀନମାନ—
ସୁନ୍ଦରେ ଦିଅଇ ଲେଖି ନିମିଷ ଜୀବନ ।

ଦିବସଟି ପୂରି ଅବା ଶୋହୁଛି କି ନାହିଁ,
ଫୁଲଟି ପଡ଼ିଲା ତାଳୁ ଭୂମି-ଶେଯେ ଶୋଇ ।

ଜୀବନ ସୋହାଗ କ୍ରୀଡ଼ା ସରିଲା ନିମିଷେ,
ଧୂଳିତଳେ ଝଡ଼ି ଏବେ ପଡ଼ିଛି ବିରସେ ।

ଅଳିଟି ବରଜି ତହୁଁ ସୁଖେ ଭଣ୍ଡବାର,
ମଉନେ ବସିଲା ଅସି ଫୁଲ ସଙ୍ଗତର ।

ତା ମୋହନ ତନୁ ମୁଖେ ପରଶିବା ପାଇଁ
ଫୁଲମଧୁପାୟୀ ଅଳି ମନ ବଳେ ନାହିଁ ।

କ୍ଷଣ କ୍ଷଣେ ଫୁଲଟି ଯେ ଯାଉଛି ମଉଳି,
ମଉନେ ଅନାଇ ବସି କି ଭାଳଇ ଅଳି !

ସମୀରେ କାନନ ଗାଏ ଧୀର ସନସନ,
ଶ୍ୟାମଳେ ଅରୁଣ ଢାଳେ ସରଗ କାଞ୍ଚନ ।

କାହିଁରେ ନୟନ ନାହିଁ ଫେରେ ଅଳିଟିର,
ଭୂତଳେ ସେ ସେହଭଳି ପଡ଼ିଛି ନିଥର ।

କେତେ ଦିନେ ଉପବନେ ଫୁଲ ଅଗଣିତ
ଡାଳ ପତ୍ରେ ଫୁଟି ପୁଣି ଶୋହିଲେ ନିରତ ।

ସଞ୍ଚରନ୍ତେ ବନଦେଶ ଚହଟାଇ ସୁଖେ,
ଖେଳନ୍ତି ଅବର ବନେ ଅନିଳ ପୁଲକେ ।
କେତେ ଅଳି ଫୁଲୁ ଫୁଲେ ଯାଉଥାନ୍ତି ବସି,
ଫୁଲ୍ ଫୁଲ୍ ନେଉଥାନ୍ତି ମଧୁବିନ୍ଦୁ ଶୋଷି ।
ସେ ଯେ ଅଳି ଏକାକୀଟି କାନନବିହାରୀ
ଏତେ ଅଳିମେଳେ ଅଳି ଖେଳୁ ନାହିଁ ବୁଲି ।
ସେ ଏକା ଫୁଲଟି ଯାଇ ଯେ ଦୂର ରଇଛେ
ତା ଭୁଲେ ଅଳି ସେ ଅଳି ସୋହାଗେ ବାନ୍ଧେ ।

---

# ଜଳ ରେ ଅନଳ *

କେତେ କେତେ ଶୋଭା ଏ ଜୀବନେ ମୋର
ନିରେଖି ନାହିଁ ନୟନେ;
ବ୍ୟୋମ ବସୁନ୍ଧରା ଉଚ୍ଛୁଳି ଉଠଇ
ଅନନ୍ତ ବିଶ୍ୱ ବିଭାନେ ।
ସିନ୍ଧୁ ସଇକତେ ବିହରି ହରଷେ,
ଧୂସର ଜଳଦ ଛଳେ
ରବି ଉଇଁବାର ପାଟଳ ସୁଷମା
ଖେଳଇ ଗଗନ ନୀରେ ।
ଶୁଭ୍ର ଊର୍ମିମାଳା, କନକ ପୁଲକେ
ନାଚୁଇ ଶିଖର ଶିରୀ,
ଚପଳ ମାଧୁରୀ ମୋହନ ବିଳାସେ
ଅସୁଥାଏ ଭଳି ଭଳି ।
ବରଷାର ଧାରା ଆକାଶ ଅବନୀ
ସଲିଳେ ଭସାଇ ଦେଇ,
ନିଜ ସିକ୍ତ ଭାଳେ ନିମିଷକେ ପୁଣି
ଦଏ କିବା ନିଧି ଫେରି ।
ସେ ଅବା କି ଏକ ସୋପାନମାଳିକା
ମଣି ହୀରା ମାଣିକ୍ୟର,
ସରଗ ଦେବତା କନକ ସରଣୀ
ମରତେ ଓହ୍ଲାଇବାର ।

---

* ସତ୍ୟବାଦୀରେ କୌଣସି ଘରପୋଡ଼ି ଲିଭାଇବାକୁ ସ୍କୁଲ ଛାତ୍ରମାନେ ଯାଇଥିଲେ । କବି ସେତେବେଳେ ସତ୍ୟବାଦୀରେ ଶିକ୍ଷକ ଥିଲେ ।

ଯେତେ ଯହିଁ ଦେଖେଁ ବନ ପରବତେ
ନିସର୍ଗ ନିର୍ମିତ ଶୋଭା,
ସେ ଗୋଟି ଗୋଟିକେ ଗଢ଼ି ହୋଇଅଛି
ଅଙ୍ଗ ତ ଏ ମୋର ହୃଅ ।

ଜଳ, ରେ ଅନଳ, ଜଳି ଉଠ ତେଜେ,
ଉଜଳୁ ଉଜଳ ହୋଇ;
ତୋ ହେମ ଆଲୋକେ ଏ ସରଗ ଛବି
ଦେଖିଥାଏଁ ବାରେ ମୁହିଁ ।

ଏ ଅନଳ ଶିଖା ଲ୍ଲିମ ଗଉରବ
ରତନ ସମ୍ପଦେ ଦଳି,
କି ଧୂଳିକେ ଅହା ତହିଁ ମଝ, ବାରୁ,
ଦେଉଛ ଜୀବନ ଢାଳି ।

ଦୂର ଚକବାଳେ ଭରି ଅସେ ରବି,
ମୋହନ ମୂରତି ଫେରି,
ରୂପ ବିଲୋଚନେ ଯାଏ ମଧୁଧାରା
ତହୁଁ ଶତ ଗୁଣ ବହୁ ।

କାଏ କାହିଁ କେଉଁ ଦୂର ପରଦେଶୁଁ
ଆସିଛ, ହେ ଧନମାଳି,
ସ୍ୱଦେଶ ଭୂମେ କି ସେନେହ ପୀରତି
ପରାଣେ ଅସଇ ଝରି !

ଜନମଭୂମି ଯେ ଜନମ ଦେଇଛି,
ଜନନୀରୁ ବଳି ବଡ଼;
ତହିଁ ସିନା କହେ ଦୟା ମାୟା ପ୍ରୀତି
ପ୍ରାଣ ପୂର ଜଳ ଜଳ ।

ତୁମ ଜନ୍ମଭୂମି ଏ ବିଶ୍ୱ ବିତାନ
ଅନନ୍ତ ଅପାର ପୁରୀ;—
ଜଳନ୍ତ ସଂସାରେ ଉଠେ ଏ ଅନଳ
ଶିଖାରେ ସେ ଭାବ ଖେଳି ।
ପରକୁ ଆପଣା କରିଅଛ, ବାପ୍ତ,
ଆପଣାରେ କରି ପର;
ପରସେବା ବ୍ରତେ ଦେଇ ଏ ଜୀବନ
ପିଲାରୁ ହୁଅ ହେ ନର ।
ପରପାଇଁ ପ୍ରୀତି ଚିକ୍କ ହୃଦଟିରେ
କି ବିଶାଳ ସୁଧାଧାର,
ବିନ୍ଦୁ ବିନ୍ଦୁ ଯହିଁ ଦେଇ ପ୍ଳାବୁଅଛ
ଏ ବିଶ୍ୱ ଭୁବନସାର ।
ଥିର ହୁଅ ତୁ, ରେ ଦାରୁଣ ଅନଳ,
ନ ଉଠ ଏଭଳି ଜଳି;
ତୋ ପରଶ ଭୟେ ସେ ସୁଧାବଦନ
ପଡ଼ିବ ଅବା ଝାଉଁଳି !
ପ୍ରାଣଭରି ସୁଖେ ବଢ଼ୁଥାଅନ୍ତ,
କୁଟୀର ଉଆସେ ରହି;
ଏ କପଣ, ବାବୁ, କୋମଳ ପରାଣେ
କିଏ ପୁଣି ଥିଲା ଲିହି ?
ଗୋଟି ଗୋଟି ତୁମେ ବାପା ମାଆଙ୍କର
ଦୁର୍ଲ୍ଲଭ ସରଗ ଶିରୀ;
କୋଳ୍ଟଁ କି ପଳକେ ଓହ୍ଲାଇ ଦଅନ୍ତେ
ଭୂଇଁରେ ଗୁଳିବ ବୋଲି ?

ଭାଇ ଭଉଣୀଙ୍କ ସଙ୍ଗତେ, ବାବୁ ହେ,
ଖେଳୁଥାନ୍ତି ସନମାନେ;
କାନନ ସମୀରେ କୁସୁମ କଳିକା
ଚଳିବାର ଜଣେ ଜଣେ ।
କନକ ଚନ୍ଦ୍ରଣେ ନାଚୁଥାନ୍ତି ସୁଖେ
ପିଅର ସେନେହ ଫୁଲେ;
ଏ ଦୁଃଖ କଷଣ ଅଙ୍ଗଶ୍ରମ, ବାବୁ,
କିଏ ଲେଖିଥିଲା ଭାଲେ ?
ନିଭିଯା, ଅନଳ, ନିଭ ରେ ତୁରିତେ,
ଜଳି ତୁ ଉଠୁ କିପାଇଁ ?
ଏ ବିଷମ ଛବି ନୟନ ଆଗେ ମୋ
ଆଉ କି ପାରିବି ସହିଁ ?
କି ଦିବ୍ୟ ଦରବେ ଗଢ଼ିଛ ଜୀବନ
ଅହା, ମୋ ହୃଦୟମଣି,
ମରତ ନର, କି ସରଗ ନନ୍ଦନ—
ଢଳେ ମୁଁ ନ ପାରେ ଚିହ୍ନି ।
ପରସୁଖେ, ବାବୁ, ସୋଦର ସେନେହେ
କି ଅବା ଦେଖିଛ ଶିଖି,
ଡହ ଡହ ଏ ଯେ ଜଳନ୍ତି ଅନଳେ
ଜୀବନ ଦେଉଛ ଢାଳି ।
ଆଜି ଯେବେ ଏଥୁ ବାହୁଡ଼ି ସକଳେ
ନିଜ ନିକୁଞ୍ଜକୁ ଯାଇ,

ଦିବସ ଭିତରେ ଲାଗିବ ଝପଟେ
ଭେଟିବି ଦୋସର ତହିଁ ।

ସେତେବେଳେ କି ହେ ଲଭି ମାତରକେ
ବଦନ ଉଜଳ ଶୋଭା
ନୟନ୍ତୁଁ ପାରିବି ନିସୋରି ଦେଇ ମୁଁ,
ଫିଟି ଏଥି ଉଠେ ଯାହା ?

ଗୁରୁ ଆସନେ ମୁଁ କୋମଳ ଅଧର
ବାନ୍ଧି ସେ ବକୁଳ ବନେ;
କଠୋର ଶାସନା ଲୋଚନେ, ବାବୁ ହେ,
ତଥିର ପାରିବି ଦିନେ ?

ଏ ଯେ ସୁଧା ସର ସେନେହ ପୀରତି
ରଞ୍ଜିତ ହୃଦୟେ ଭର—
କଣିକାଏ ତହିଁ ଦିଅନ୍ତ ଯେବେ, ଏ
ପରାଣ ଯାଆନ୍ତା ପୂରି ।

ତୁମଠାରୁ, ବାବୁ, ଲଭି ଏ ସମ୍ପଦ,
ଜୀବନ ଅମୂଲ୍ୟ ମଣି,
ସାର୍ଥକ କରନ୍ତି ଏ ମୋର ଜନମ,
ଧନୀରୁ ହୁଅନ୍ତି ଧନୀ ।

ଧନ ମାନେ ଶୋଧୁ ତୁମ ମଧୁ ମେଳେ
ଜୀବନ ହରଷଭରେ,
ତୁମ ଭଳି ଜଣେ ଦୋସର, ବାବୁ ହେ,
ହୋଇ ମୁଁ ପାରନ୍ତି ହେଲେ ।

# ବେଗେ ଯାଉ ପାଇ

କି ବିଷମ ଅନ୍ଧକାରେ ଘୋଟିଅଛି ମହୀ;
ଆକାଶ ଅବନୀ କାହିଁ ବାରି ହେଉ ନାହିଁ ।

ଅସରା ଅସରା ହୋଇ ଆସୁଛି ବରଷି,
ନଈ ନାଳ ପୂରି ପାଣି ଯାଉଅଛି ଭାସି ।

ତହିଁ ପୁଣି ବହୁଅଛି ବାଆ ଅଣଥାଶ,
ଥରିପାଏ ହୃଦ, ଅଙ୍ଗ ହୁଅଇ ଅବଶ ।

ଘନ ଗରଜନେ କମ୍ପି ଉଠେ ଗୃହ ବନ,
କୁଳିଶ ପଡ଼ଇ କିବା ବିଦାରି ଗଗନ ।

ବେଳେ ବେଳେ ଜଳିଉଠେ ବିଜୁଳିର ଜ୍ୟୋତି,
ଫେରଇ ଏ ନିଶୀଥ ଭୀମ ବିକଟ ମୂରତି ।

ଏ ଯେ କି ବିଷମ ନିଶି, ମରଣରୁ ବଳି
ଉପୁଜାଏ ମୋ ପରାଣେ ଆତଙ୍କ ଅଙ୍କୁର ।

ଏ ଅନ୍ତେ ନ ଥାନ୍ତା ଯେବେ ସୁଖ-ଉଷା ପୁଣି,
କ୍ଷଣେ କି ପରାଣ ଧରିପାରନ୍ତା ପରାଣୀ !

କାଲି ଯେତେବେଳେ ଚାଲେ ଯାଇଥିବ ଶଙ୍କା,
ଗୃହୁ ବେଗେ ଉଭା ହେବ କନକ ପାହାନ୍ତ୍ର;

ଉଠିବ କୋକିଳ ତା ଛଳ ବାକୁଳ ତପନ,
ହେମ ପରିଧାନେ ମଣ୍ଡି ସରଗ ଭୁବନ;

ସୁନୀଳ ଗଗନ ବୁକେ ସୁଖେ ହସି ଖେଳି,
ଧୀରେ ବାହୁ ନେଉଥିବ ବିଶ୍ୱ ପ୍ରାଣଭରି ।

ମୃଦୁ ପକ୍ଷେ ସମୀରଣ ଉଡ଼ି ଉଡ଼ି ଆସି,
ପଦ୍ମ ଫୁଟିଲ ଯାଉଥିବ ସୌରଭ ପରଶି ।
କୁଆ କୋଇଲିଏ ତାଙ୍କ ଗୃହେ ଭସାଇ,
ବନ ଖେଳେ ଦେବେ ନିଜ ସମ୍ବନ୍ଧ ମିଶାଇ ।

ଏ ନିଧି ନ ଥାନ୍ତା ଯେବେ ଉଷା ଆଗମନେ,
କେ ସହିପାରନ୍ତା ଶୀତ ବାଆପାଣି ଦିନେ ?
ଏ ଚିହ୍ନ ପରିଶେ କେତେ ବିତିଗଲା ରାତି;
ପାଦତଳେ ପଡ଼ିଅଛି ପଥ ଅକଳନ୍ତି ।

ଏ ଘନ ଅନ୍ଧାରେ କିଛି ନ ଦିଶଇ ବାଟ;
ପାଷାଣହୃଦୟ ହେଲେ ଯାଉଛି ତରଳି ।
ପାଣି ପବନର ଭଲେ ନ ହୁଏ କଳନା,
ଚିର ସ୍ରୋତେ ଦାଣ୍ଡ ଘାଟ ସକଳ ଅଜଣା ।

ଏ ଯେ କି ବିଷମ, ବଳି ସିଂହ ଗରଜନ,
କୁଳିଶ ଶବଦ ପ୍ରାଣେ ବାଜେ ନିତିଦିନ ।
ଏସବୁ ଭିତରେ ପୁଣି ବିଜୁଳି ତରାସ
ବେଳେ ବେଳେ ଆସି କ୍ଷଣେ ହୁଏ ପରକାଶ ।

ଯେ ଭୀମ ମୂରତି ଲୁଚି ରହନ୍ତା ଗୋପନେ,
ନିମିଷେ ନିରେଖେ ଅଣି କାତର ନୟନେ ।
ଏ ବଡ଼ ବିଷମ ମୋର ବାଟ ଚାଲିବାର,
ଥୟ କର ତୁମ୍ଭେ ପାଦ, ଚିତ୍ତ ଅସମ୍ଭାଳ ।
କେତେବେଳ ଅନ୍ତେ ପୁଣି ପାଇବ ଏ ରାତି,
ନବ ବେଶେ ପ୍ରାଚୀ-ନଭେ ଶୋଭିବ ପାହାନ୍ତି ?

ନବ ଘନମଣି ଭଳି ବାହ୍ବର ଗଗନ,
ସୁବର୍ଣ୍ଣ କିରଣେ ଦେବ ପଖାଳି ପରାଣ ?
ରବାବରେ ଧୀର ବାଅ ଫୁଲ୍ଲ ଫୁଲ୍ଲ ବହ୍ନି
କୋମଳ କଳିଟି ଦେବ ନିମିଷେ ନଗ୍ନଇ ?
ଶୁଥ ସାଗ୍ରି ମଧୁ ରବେ ପୁରାଇ ଅନ୍ତର,
କୁଞ୍ଜୁ କୁଞ୍ଜେ ଡାଳୁ ଡାଳେ ଖେଳାଇବେ ସ୍ୱର ?
ସହିବାର ବଳ ମୋର ଛତେ ଆଉ ନାହିଁ;
ଏ ବାଅପବନ ରତ୍ତ ବେଗେ ଯାଉ ପାଇ ।



ମୁଦ୍ରାକର—ଶ୍ରୀ ଘନଶ୍ୟାମ ଦାଶ, ଜାଜ ସ୍ମୋର୍ଜ ପ୍ରେସ୍, ବ୍ରହ୍ମପୁର